# ଜୟ ଜଗନ୍ନାଥ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର,
ଓଡ଼ିଶା, ଭୁବନେଶ୍ୱର

# ଜୟ ଜଗନ୍ନାଥ

ଲେଖକ : ଶ୍ରୀ ହରିହର ବାହିନୀପତି
ପ୍ରଥମ ସଂସ୍କରଣ : ୧୯୯୭
ପ୍ରକାଶନ ସଂଖ୍ୟା : ଏସ୍.ଆର୍.ସି. ୧୮୫ - ୧୭/୯୭
ଛାପା ସଂଖ୍ୟା : ଦୁଇ ହଜାର
ପ୍ରକାଶକ : ଡଃ. ବିମଳେନ୍ଦୁ ମହାନ୍ତି,
ନିର୍ଦ୍ଦେଶକ, **ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର,**
ଓଡ଼ିଶା, ଭୁବନେଶ୍ୱର - ୭୫୧ ୦୦୧
ମୁଦ୍ରଣ : ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ
ସଂସ୍ଥା ଦ୍ୱାରା ନିସ୍ୱାସ, ଭୁବନେଶ୍ୱରରେ ମୁଦ୍ରିତ
ମୂଲ୍ୟ : ଟ ୩.୫୦

# JAYA JAGANNATHA

Author : Sri Harihar Bahinipati
First Edition : 1997
Publication No. : SRC - 185 -17/97
No. of Copies : 2,000
Published by : Dr. Bimalendu Mohanty, Director
State Resource Centre for Adult Education,
Orissa, Bhubaneswar - 751 001
Printed at : NISWASS, Bhubaneswar - 751 016
Price : Rs. 3.50

# ଜୟ ଜଗନ୍ନାଥ

ଜଗତର ନାଥ ଜଗନ୍ନାଥ । ଜଗତ କହିଲେ, ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳକୁ ହିଁ ବୁଝାଏ । ଅନ୍ୟ ଭାଷାରେ ବିଶ୍ୱ ବ୍ରହ୍ମାଣ୍ଡ । କିଛି ନ ହେଲେ ଅନ୍ତତଃ ସାରା ଦୁନିଆ । ତେଣୁ ଦୁନିଆର ଭାବ, ଦୁନିଆର ଚିନ୍ତା ଚେତନା, ଏହି ଜଗନ୍ନାଥଙ୍କ ଭିତରୁ ନ ବାହାରିଲେ, ସେ ସିନା ନାମକୁ ଜଗନ୍ନାଥ ହେବେ, କିନ୍ତୁ ପ୍ରକୃତରେ ଜଗନ୍ନାଥ ହୋଇପାରିବେ ନାହିଁ ।

ବର୍ତ୍ତମାନ ଦେଖାଯାଉ ସେ କିଭଳି ପ୍ରକୃତରେ ଜଗତର ନାଥ ଜଗନ୍ନାଥ । ସେ ଖାଲି ପୃଥିବୀର, ନା ସାରା ଜଗତର ?

ଜଗନ୍ନାଥ ବା ତାଙ୍କ ଦେଉଳ ଯେଉଁ ଠାରେ ରହିଛି, ତାହା କେବଳ ଶ୍ରୀକ୍ଷେତ୍ର ନୁହେଁ, ବରଂ ଅନେକଙ୍କ ମତରେ ଏହା ହେଉଛି ମର୍ତ୍ତ୍ୟ ବୈକୁଣ୍ଠ । ଏଠାରେ ଜନ୍ମ ବା ମୃତ୍ୟୁ ହେଲେ, ପ୍ରାଣୀର ବୈକୁଣ୍ଠ ପ୍ରାପ୍ତି ହୁଏ । ପୁନର୍ଜନ୍ମ ହୁଏ ନାହିଁ। ଏଠାରେ ପାତାଳର ବି ସୂଚନା ଅଛି । କେବଳ ପାତାଳେଶ୍ୱର ମହାଦେବ ଯେ ଶ୍ରୀମନ୍ଦିରରେ ଅଛନ୍ତି, ତାହା ନୁହେଁ; ଏଠାରେ ଅଛି, ବଳିବାମନ ମନ୍ଦିର, ଯେଉଁଠି ଭଗବାନ ବାମନ ବେଶରେ ରାକ୍ଷସ ରାଜ ବଳିଙ୍କୁ ପାତାଳକୁ ଚାପି ଦେଇଥିଲେ । କାରଣ ବଳି ମନେ ମନେ ବଡ ଅହଂକାରୀ ହୋଇଯାଇଥିଲେ । ତାଙ୍କଠାରୁ ଆଉ ବଡ ଦାନୀ ଲୋକ କେହି ନାହିଁ ବୋଲି ଅହଂକାରରେ ଫାଟି ପଡିଲେ । ସତକୁ ସତ ଶ୍ରୀମନ୍ଦିର ଭିତର ବେଢାରେ ଉତ୍ତର ଦିଗକୁ ଗୋଟିଏ ମନ୍ଦିର ଅଛି । ଏହାର ଅଧେରୁ ଅଧିକ ଅଂଶ ତଳେ ପୋତି ହୋଇପଡିଛି ।ପାତାଳ ଭଳି ଅନେକ ତଳକୁ ଗଲେଯାଇ, ଠାକୁରଙ୍କର ଦର୍ଶନ ମିଳିବ । ତେଣୁ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ, ଏହି ତିନି ସ୍ଥଳୀର ଏଠାରେ ମିଳନ ଘଟିଛି ।

ବର୍ତ୍ତମାନ ଦେଖାଯାଉ, ସାରା ପୃଥିବୀର ସମନ୍ୱୟ କିପରି ଘଟିଛି ? ଆମ ବଡ ଦେଉଳରେ ଚାରିଗୋଟି ପ୍ରଧାନ ବିଗ୍ରହ ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନ ବିରାଜିତ ଅଛନ୍ତି । ସେହି କାଠ ମୂର୍ତ୍ତି ଗୁଡିକର ମୁଖ୍ୟବର୍ଣ୍ଣ ହେଲା ଯଥାକ୍ରମେ :- ଧଳା, କଳା, ହଳଦିଆ ଆଉ ନାଲି । ଅବଶ୍ୟ ପ୍ରତ୍ୟେକ ମୂର୍ତ୍ତିରେ ଏହି ବିଭିନ୍ନ ରଙ୍ଗ ରହିଛି । ସାରା ମନୁଷ୍ୟ ସମାଜ ଉପରେ ଆଖି ବୁଲାଇ ଆଣିଲେ ଏହି ଚାରି ରଙ୍ଗର ଲୋକଙ୍କୁ ଦେଖିବାକୁ ମିଳିବ । ୟୁରୋପ, ଆମେରିକାର ଧଳା ଲୋକଙ୍କ ସାଙ୍ଗକୁ ଆଫ୍ରିକାର କଳାଲୋକ । ଚୀନ, ଜାପାନ ଆଉ ମଙ୍ଗୋଲିଆର ଈଷତ୍ ହଳଦିଆ ରଙ୍ଗର ଅଧିବାସୀମାନଙ୍କ ସାଙ୍ଗକୁ ଲୋହିତ ଭାରତୀୟ ଲୋକଙ୍କ ଦେହର ରଙ୍ଗ ବିଚାରକୁ ନେଲେ ଏହା ସହଜରେ ବୁଝି ହୋଇଯାଏ ।

ଜଗନ୍ନାଥ ଧର୍ମର ଅନ୍ୟ ନାମ ହେଉଛି ମାନବ ଧର୍ମ । ତାହା ଏହି ଚାରିଗୋଟି ମୂର୍ତ୍ତିରୁ ବେଶ୍ ପ୍ରକାଶ ପାଉଛି ।

ଜଗନ୍ନାଥ ହେଉଛନ୍ତି ହିନ୍ଦୁ ଧର୍ମର ଦେବତା । ଏହି ଧର୍ମକୁ କେହି କେହି ସନାତନ ଧର୍ମ ବୋଲି କହନ୍ତି । ମୁସଲମାନ, ଖ୍ରୀଷ୍ଟିଆନ, ବୌଦ୍ଧ ଓ ଜୈନ ଧର୍ମ ଯଥାକ୍ରମେ ମହମ୍ମଦ, ଯୀଶୁ, ବୁଦ୍ଧଦେବ ବା ଜୀନଙ୍କଠାରୁ ଆରମ୍ଭ ହୋଇଛି ବୋଲି କୁହାଯାଇଥାଏ । କିନ୍ତୁ ସନାତନ ଧର୍ମ କେବେଠାରୁ ଏବଂ କାହାପାଖରୁ ଆରମ୍ଭ ହୋଇଛି, ତାହା ନିର୍ଦ୍ଦିଷ୍ଟ ଭାବରେ କହି ହେବନାହିଁ । ବେଦ ବା ଶ୍ରୁତି ପୃଥିବୀର ପ୍ରାଚୀନତମ ଶାସ୍ତ୍ର ବା ଗ୍ରନ୍ଥ । ଜଗନ୍ନାଥଙ୍କ କଥା ଋକ୍‌ବେଦର ପୁରୁଷ ସୂକ୍ତରେ ରହିଅଛି । ଏହା ପଣ୍ଡିତମାନେ ବୁଝାଇଛନ୍ତି ।

ସମୁଦ୍ରରେ ଭାସି ଆସିଥିବା ଦାରୁରେ ଜଗନ୍ନାଥଙ୍କ ବିଗ୍ରହ ଗଢା ହୋଇଥିଲା । ଏହି ଦାରୁ ବିଷୟ ବେଦର ଗୋଟିଏ ଶ୍ଳୋକରେ ମଧ୍ୟ ଉଲ୍ଲେଖ ଅଛି ।

ବହୁ ବର୍ଷ ଆଗର କଥା । ମନୁଷ୍ୟ ବଣ ଜଙ୍ଗଲରେ ବୁଲି ବୁଲି ପଶୁ ଶିକାର କରି ପେଟ ପୋଷୁଥିଲା । ସେହି ଆଦିମ ମଣିଷମାନେ ଜଗନ୍ନାଥଙ୍କୁ ଦେବତା ମାନି ପୂଜା କରୁଥିଲେ । ସେତେବେଳେ ବେଦ ନ ଥିଲା କି ଆର୍ଯ୍ୟ ସଭ୍ୟତା ଆରମ୍ଭ ହୋଇନଥିଲା ।

ଜଗନ୍ନାଥ ମନ୍ଦିରରେ ଚାଲୁଥିବା ଚଳଣି, ରୀତି ନୀତି ଏବଂ ଦାରୁ ବିଗ୍ରହର ଆକାର ପ୍ରକାର ଦେଖିଲେ ଏହି ଠାକୁର ଆଦିମ ଅଧିବାସୀଙ୍କର ଠାକୁର ବୋଲି ଜଣାଯାଏ । ଓଡିଶାର କୋରାପୁଟରେ ଥିବା ଆଦିବାସୀ ଗୋଷ୍ଠୀ ସଅଁରା ଓ ସୁନ୍ଦରଗଡର ଗଣ୍ଡ ଉପଜାତିଙ୍କ ଭିତରେ ଏହି ଧରଣର ପୂଜା ବା ପର୍ବ–ପର୍ବାଣୀ ଏବେ ମଧ୍ୟ ଚାଲିଥିବା ଜଣାଯାଏ । ସଅଁରମାନେ ଯେଉଁ କାଠ ଦେବତାଙ୍କୁ ପୂଜା କରନ୍ତି, ତାହା ନିମ୍ବକାଠରେ ତିଆରି ଏବଂ ସେ ଠାକୁରଙ୍କ ହାତ ଗୋଡ ନ ଥାଏ । ଜଗନ୍ନାଥଙ୍କ ନିମ୍ବ ବିଗ୍ରହ ସହିତ ଏହାର ସମାନତା ଅଛି । ସୁନ୍ଦରଗଡ ଜିଲ୍ଲାର ବଡଗାଁ ଥାନାରେ 'ଭୋଇ ପାଲି' ବୋଲି ଗାଁ ଅଛି । ଏଠାରେ ବର୍ଷକୁ ଥରେ ଜଗନ୍ନାଥଙ୍କର ଦେବ ସ୍ନାନ ଭଳି ଏକ ଉତ୍ସବ ହୁଏ । ଗୋଟିଏ ମଣ୍ଡପ ଉପରକୁ ଦୁଇ ଖଣ୍ଡ କାଠର ଦେବତା ଆସନ୍ତି । ଶ୍ରୀମନ୍ଦିରର ଜଗାବଳିଆ ଭଳି, ସେ ଦୁଇଟି ଦେବତାଙ୍କର ନାମ ହେଉଛି ଜଂଘା ଲିଂଘା । ଜଗନ୍ନାଥ ରଥରେ ବାମନ ରୂପରେ ଗଲାବେଳେ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଲୋକେ ନଡିଆ,

କଦଳୀ ଆଦି ଫଳ ଅର୍ପଣ କରନ୍ତି । ସେହିପରି ଏହି ଜଂଘା ଳିଂଘାଙ୍କୁ କେବଳ ଗଣ୍ଡଜାତି ଲୋକ ନୁହଁନ୍ତି, ଅନ୍ୟମାନେ ମଧ୍ୟ ଫଳ ଭୋଗ ଦିଅନ୍ତି ।



ଖାଲି ସେତିକି ନୁହେଁ, ଜଗନ୍ନାଥଙ୍କ ପୂଜା କରିବାର ଅଧିକାର ପ୍ରଥମେ ଆଦିମ ଅଧିବାସୀମାନଙ୍କର ହିଁ ଥିଲା ବୋଲି କୁହାଯାଏ । ରାଜା ଇନ୍ଦ୍ରଦ୍ୟୁମ୍ନ ଏହାଙ୍କର ସନ୍ଧାନ ପାଇ ପୂଜା ଆରମ୍ଭ କରିବା ପୂର୍ବରୁ ବିଶ୍ୱାବସୁ ନାମକ ଜଣେ ଶବର ରାଜା ନୀଳ ମାଧବ ଭାବରେ ତାଙ୍କୁ ପୂଜା କରୁଥିଲେ । ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଦୂତ ବିଦ୍ୟାପତି ପ୍ରଥମେ ବିଶ୍ୱାବସୁଙ୍କ ଝିଅ ଲଳିତା ସାହାଯ୍ୟରେ

ନୀଳ ମାଧବଙ୍କର ସନ୍ଧାନ ପାଇଥିଲେ । ସେ ରାଜାଙ୍କୁ ଏ ଖବର ଜଣାଇଲେ କିନ୍ତୁ ଠାକୁରଙ୍କୁ ଦେଖିବା ପାଇଁ ରାଜା ପହଞ୍ଚିଲା ବେଳକୁ ନୀଳମାଧବ ଅନ୍ତର୍ଦ୍ଧାନ ହୋଇଗଲେ । ପରେ ସେ ଦାରୁ ରୂପରେ ସମୁଦ୍ରରେ ଭାସିଥିଲେ । ସେହି ଦାରୁକୁ ବିଶ୍ୱାବସୁଙ୍କ ସାହାଯ୍ୟରେ ଇନ୍ଦ୍ରଦ୍ୟୁମ୍ନ ଆଣିବାକୁ ସମର୍ଥ ହେଲେ । ଏହି ଦାରୁରେ ବିଗ୍ରହମାନେ ଗଢାହେଲେ । ମୂର୍ତ୍ତି ଗଢିବା ପାଇଁ ସ୍ୱର୍ଗରୁ ନିଜେ ବିଶ୍ୱକର୍ମା ଆସିଥିଲେ । ଏ ମୂର୍ତ୍ତିଗୁଡିକ ହାତ, ଗୋଡ ଆଦି ନ ଥାଇ ଅଧା ରହିବା ସମ୍ପର୍କରେ ଅନେକ ଲୋକ-କାହାଣୀ ପ୍ରଚଳିତ ଅଛି ।

ଜଗନ୍ନାଥ ଧର୍ମ, ସମନ୍ୱୟର ଧର୍ମ । ସମସ୍ତଙ୍କୁ ନେଇ ମିଳିମିଶି ଚଳିବାର ଆଦର୍ଶ ଉପରେ ଏହା ଗଢା ହୋଇଛି । ଉଦାହରଣ ସ୍ୱରୂପ ଆଦିବାସୀମାନଙ୍କ ପ୍ରତିନିଧି ଶବର ରାଜା ବିଶ୍ୱାବସୁ ଓ ଆର୍ଯ୍ୟଙ୍କର ପ୍ରତିନିଧି ଇନ୍ଦ୍ରଦ୍ୟୁମ୍ନଙ୍କର ସହଯୋଗରେ ଜଗନ୍ନାଥ ବିଗ୍ରହ ତିଆରି ଆରମ୍ଭ ହେଲା । ଶବର କନ୍ୟା ଲଳିତା ଓ ବ୍ରାହ୍ମଣ ବିଦ୍ୟାପତିଙ୍କ ମଧ୍ୟରେ ବିବାହ ହେଲା । ଜଗନ୍ନାଥ ଧର୍ମ କ୍ଷୁଦ୍ର ଜାତି ବା ଗୋଷ୍ଠୀ ଭେଦର ବହୁ ଉପରେ, ତାହା ଏଥିରୁ ପ୍ରମାଣିତ ହୋଇଛି ।

ପ୍ରାଚୀନ କାଳର ପରଂପରା ରକ୍ଷା କରି, ଏବେ ମଧ୍ୟ ଯୋଡା ଆଷାଢ ପଡ଼ିଲେ, ସାଧାରଣତଃ ବାରବର୍ଷ ପରେ ତିନିଠାକୁରଙ୍କର ନୂଆ କଳେବର ହୁଏ । ଏହା ଆଗରୁ ପତି ମହାପାତ୍ର ନୂଆ ଠାକୁରମାନଙ୍କର ଦାରୁ ଅନୁସନ୍ଧାନରେ ଯାଇଥାଆନ୍ତି । ଅବଶ୍ୟ ଜଗନ୍ନାଥ ଧର୍ମରେ ଥିବା ସଂହତି ଓ ପରସ୍ପରକୁ ସାହାଯ୍ୟ ଓ ସହଯୋଗର ଆଦର୍ଶ ଦୃଷ୍ଟିରୁ, ଏହି ଅନୁସନ୍ଧାନ ପର୍ବରେ ତାଙ୍କ ସଙ୍ଗରେ ଅନ୍ୟ ସେବାୟତ ବିଶେଷତଃ ଦଇତାମାନେ ବି ଯାଇଥାଆନ୍ତି ।

ଦୈତ୍ୟ ଶବ୍ଦ କାଳକ୍ରମେ ଦଇତାରେ ପରିଣତ ହୋଇଛି ବୋଲି ଅନେକ ମତ ଦିଅନ୍ତି । ଯେଉଁମାନେ ବଣ ଜଙ୍ଗଲ ବା ଗିରିଗୁହାରେ ରହୁଥିଲେ, ସେମାନଙ୍କୁ ଦୈତ୍ୟ କୁହାଯାଉଥିଲା । ବିଶ୍ୱାବସୁ ଥିଲେ ଶବର । ସେ ପ୍ରଥମେ ମାଧବ ରୂପୀ ଜଗନ୍ନାଥ ବା ପୁରୁଷୋତ୍ତମଙ୍କୁ ପୂଜା କରୁଥିଲେ । ଜଣେ ବନବାସୀ ଭାବରେ ସେ ଠାକୁରଙ୍କୁ ନାନା ପ୍ରକାର ଫଳମୂଳ ଭୋଗ ଲଗାଉଥିଲେ ।

ତ୍ରେତା ଯୁଗରେ, ନର ନାରାୟଣ ରାମ ବନବାସ କରୁଥିଲେ । ସେତେବେଳେ ଭକ୍ତିମତୀ ଶବରୀର ଅଇଁଠା ଫଳ ସେ ଖୁସିରେ ଖାଇଥିଲେ ।

## ନରଦେବତା - ଦାରୁଦେବତା

ଜଗନ୍ନାଥ ଧର୍ମ ହେଉଛି ମାନବ ଧର୍ମ । ଯାହା ମନୁଷ୍ୟ ପାଖରେ ସତ୍ୟ, ତାହା ଜଗନ୍ନାଥଙ୍କ ପାଇଁ ମଧ୍ୟ ସତ୍ୟ । ଭାଗବତରେ ପଦେ କଥା ଅଛି -

*"ମର୍ତ୍ତ୍ୟ ମଣ୍ଡଳେ ଦେହ ବହି*
*ଦେବତା ହେଲେ ବି ମରଇ ।"*

ମଣିଷ ଜନ୍ମ ହେଲା ପରେ ଦିନେ ନା ଦିନେ ମରଣ ବରଣ କରେ । ସେହିପରି ଜଗନ୍ନାଥଙ୍କୁ ମଧ୍ୟ ମଣିଷ ଭଳି ଦେହ ତ୍ୟାଗ କରିବାକୁ ହୁଏ । ଦେହର ବିନାଶ ଘଟେ, କିନ୍ତୁ ଆତ୍ମା ଅମର, ଅକ୍ଷୟ । 'ଗୀତା'ରେ କୁହାଯାଇଛି - ଆତ୍ମାର ବିନାଶ ନାହିଁ । ତାହା ତ ଅଗ୍ନିରେ ପୋଡ଼ିବ ନାହିଁ । ଖଡ୍‌ଗରେ ଛିଡିବ ନାହିଁ । ପବନରେ ଉଡିବ ନାହିଁ କି ପାଣିରେ ବୁଡିବ ନାହିଁ । ଶରୀର ବିନାଶ ହୋଇଗଲା ପରେ ଆତ୍ମା ଅନ୍ୟ ଶରୀର ଗ୍ରହଣ କରି ନେବ । ଜଗନ୍ନାଥ ତ ସହଜେ କେବଳ

ଆତ୍ମା ନୁହନ୍ତି, ସେ ପରମାତ୍ମା । ଭଗବାନଙ୍କର ମୃତ୍ୟୁ ଆସିଲା କେଉଁଠୁ ? ନିର୍ଦ୍ଦିଷ୍ଟ ରୂପ ମଧ୍ୟ କଣ ତାଙ୍କର କଳ୍ପନା କରାଯାଇ ପାରିବ ? ସେ ଅରୂପ, ନିରାକାର, ନିର୍ଲିପ୍ତ, ନିର୍ବିକଳ୍ପ ପରମ ବ୍ରହ୍ମ । ସେ ପୁଣି ସାକାର, ସର୍ବରୂପ । ମତ୍ସ, କଚ୍ଛପ ଠାରୁ ବାମନ, ବଳରାମ, ଶ୍ରୀରାମ, ଶ୍ରୀକୃଷ୍ଣ ଓ ବୌଦ୍ଧ ଅବତାର ତାଙ୍କର । ସ୍ୱୟଂ ଜଗନ୍ନାଥ ବି ଏସବୁ ରୂପ ଧରନ୍ତି । ଯଦି ଧରନ୍ତି, ଏ ରୂପର ଦିନେ ନା ଦିନେ ଅବସାନ ହେବ । ଆତ୍ମାର ନ ହେଉ ପଛକେ । ତେଣୁ ନବ କଳେବରରେ ଶରୀର ସିନା ବଦଳି ଯିବ କିନ୍ତୁ ଆତ୍ମା ବା ପରମାତ୍ମା ବଦଳିବ ନାହିଁ। ସେଥିପାଇଁ ପୁରୁଣା ଶରୀର ଭିତରେ ଥିବା ସେହି ବ୍ରହ୍ମକୁ ନୂଆ ଶରୀରରେ ରଖା ହୁଏ । ଜଣେ ସେବକ ନବ କଳେବରର ଏହି ଘଟ ପରିବର୍ତ୍ତନ କରନ୍ତି । ତାଙ୍କ ହାତରେ ଓ ଆଖିରେ କନା ବନ୍ଧା ହୋଇଥାଏ । ସେ ବ୍ରହ୍ମକୁ ଛୁଇଁ ପାରନ୍ତି ନାହିଁ କି ଦେଖି ମଧ୍ୟ ପାରନ୍ତି ନାହିଁ। ଏହାହିଁ ହେଉଛି ବ୍ରହ୍ମର ସ୍ୱରୂପ ବା ନିଜ ରୂପ ।

ଏହି ଘଟ ପରିବର୍ତ୍ତନ କରିବ କିଏ ? ଜଣେ ଆତ୍ମୀୟ ସିନା! ପିତାଙ୍କର ମୃତ୍ୟୁପରେ ତାଙ୍କ ଅନ୍ତ୍ୟେଷ୍ଟି କ୍ରିୟା ତାଙ୍କର ପୁତ୍ର ସିନା କରିବେ । ତେଣୁ ପରମ ପିତା ଜଗନ୍ନାଥଙ୍କର ଆପଣାର ସେବକମାନଙ୍କ ମଧ୍ୟରୁ ବିଶ୍ୱାବସୁଙ୍କ ବଂଶଧର ବୋଲି କୁହାଯାଉଥିବା ଜଣେ ବୁଢା ଦଇତା ଏହି ବ୍ରହ୍ମ ପରିବର୍ତ୍ତନ କରିଥାଆନ୍ତି । କେବଳ ସେତିକି ନୁହେଁ, ଦଇତା କୁଳର ସମସ୍ତ ସେବକ ଏହି ସମୟରେ ଆମ ଲୋକାଚାରରେ ଅଶୌଚ ପାଳନ କରି, ଶୁଦ୍ଧି ଶ୍ରାଦ୍ଧାଦି କରିଥାଆନ୍ତି । କିନ୍ତୁ ଏହି ସେବକମାନେ ମହାପ୍ରଭୁଙ୍କର ବ୍ରାହ୍ମଣ ସେବକ ନୁହନ୍ତି କିମ୍ବା ଅନ୍ୟାନ୍ୟ ବ୍ରାହ୍ମଣ ସେବକଙ୍କ ଭଳି ଏମାନଙ୍କ ର ବିବାହଜନିତ ବନ୍ଧନ ସେହି ସେବକମାନଙ୍କ

ଭିତରେ ଆବଦ୍ଧ ନୁହେଁ । ମହାପ୍ରଭୁଙ୍କ ଆପଣାର ସେବକମାନେ କେବଳ କ୍ଷତ୍ରିୟ ରାଜା ବା ବ୍ରାହ୍ମଣ ଜାତିର ନୁହନ୍ତି, ବରଂ ସେମାନଙ୍କର ଜାତିଅଣ ସଂପର୍କ ବା କୌଳିକ ବ୍ୟାପ୍ତି ସୀମିତ ନହୋଇ ବ୍ୟାପକ । ଏଥିରୁ ଜଣାଯାଉଛି, ଜଗନ୍ନାଥ ଧର୍ମ କୌଣସି ଏକ ନିର୍ଦ୍ଦିଷ୍ଟ, ଉଚ୍ଚ ବର୍ଣ୍ଣର ଜାତି ବା ଗୋଷ୍ଠୀର ଏକଚାଟିଆ ଅଧିକାର ନୁହେଁ ।



ଜଗନ୍ନାଥ ସର୍ବସାଧାରଣଙ୍କୁ ଦର୍ଶନ ଦେବାକୁ ବର୍ଷକୁ ଥରେ ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ସ୍ନାନ ବେଦିକୁ ଆସନ୍ତି । ସଙ୍ଗରେ ଥାଆନ୍ତି ଭାଇ, ଭଉଣୀ ଆଉ ସୁଦର୍ଶନ । ମନ୍ଦିରର ଉତ୍ତର ଦ୍ୱାର ପାଖରେ ଥିବା ଶୀତଳା ଠାକୁରାଣୀଙ୍କ ସାମନା

ସୁନା କୂଅରୁ ପୂର୍ବ ଦିନରୁ ପାଣି ଅଣି ରଖା ହୋଇଥାଏ । ୧୦୮ ଗୋଟି କୁମ୍ଭ ମାଠିଆରେଥିବା ସେହି ସୁବାସିତ ପାଣିରେ ସେମାନେ ଗାଧୁଅନ୍ତି । ଏହି କୂଅ ପାଣି ସାରା ବର୍ଷଯାକ ଅନ୍ୟ ଭାବେ ବ୍ୟବହାର ନ ହୋଇ ମୁଦ ହୋଇ ରହିଥାଏ । କେବଳ ଖୋଲେ ବର୍ଷକୁ ଥରେ, ଏହି ସମୟରେ । ଫଳରେ ଲୋକାଚାର ଅନୁଯାୟୀ ଠାକୁରମାନଙ୍କୁ ଜର ହୁଏ । ସେମାନେ ପଥି ପାଚନ ଖାଅନ୍ତି । ଚେର ମୂଳି ଔଷଧ ମଧ୍ୟ । କିଛି ଦିନ ବିଶ୍ରାମ ନିଅନ୍ତି । ପରେ ଭଲ ହେଲେ, ବାହାରକୁ ବୁଲିଯାଅନ୍ତି । ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ଅସଂଖ୍ୟ ଭକ୍ତଙ୍କୁ ସଙ୍ଗୋଳନ୍ତି । ସେମାନଙ୍କଠାରୁ ସଙ୍ଗୋଳା ବି ଘେନନ୍ତି । ପତିତପାବନ ଯାତ୍ରା ଏହିପରି ଆରମ୍ଭ ହୁଏ । ଏହି ଯାତ୍ରା ସ୍ନେହ, ପ୍ରୀତି ଓ ଆପଣା ପଣରେ ସମସ୍ତଙ୍କୁ ଏକାଠି କାଳ କାଳ ଧରି ବାନ୍ଧି ରଖିଛି । ଯେଉଁ କୂଅରୁ ପାଣି ଆସି ସ୍ନାନ ଯାତ୍ରା ହୁଏ, ସେହି କୂଅରେ ଗଙ୍ଗା, ଯମୁନା ବା ସରସ୍ୱତୀ ପ୍ରଭୃତି ସବୁ ପବିତ୍ର ନଦୀ ଏବଂ ଭାରତ ବର୍ଷର ସବୁ ତୀର୍ଥ ର ଜଳ ଯାତ୍ରାର ପୂର୍ବଦିନ ଆସି ମିଳିତ ହୁଅନ୍ତି । ଏଥିରୁ ଅନୁମାନ କରାଯାଏ ଯେ, ଜଗନ୍ନାଥ ଧର୍ମରେ ସାରା ଭାରତ ବର୍ଷ ହିଁ ଏକାକାର ହୋଇଯାଇଛି ।

ସ୍ନାନ ପରେ ମହାପ୍ରଭୁଙ୍କୁ ଜର ହୁଏ । ଏହି ସମୟକୁ ଅନବସର ବା ଅଣସର କହନ୍ତି । ଏହା ଠାକୁରମାନଙ୍କର ବିଶ୍ରାମ ସମୟ । ଏହି ଅଣସର ତିଥି ଆଷାଢ଼ ମାସର କୃଷ୍ଣ ପକ୍ଷରେ ପ୍ରତି ବର୍ଷ ପଡ଼ିଥାଏ । ସେତେବେଳର ଏହି ପୂଜାକୁ ଗୁପ୍ତପୂଜା -୨ କୁହାଯାଏ । ଏହାକୁ କେବଳ ଦଇତାମାନେ କରିଥାଅନ୍ତି । ଏ ସମୟରେ ଛତିଶାନିଯୋଗ ସେବକ ଗୋଷ୍ଠୀଙ୍କ ମଧ୍ୟର ଅଧିକାଂଶ ଗୋଷ୍ଠୀ ମହାବାହୁଙ୍କ ସେବାରୁ ବଞ୍ଚିତ ହୁଅନ୍ତି । ସର୍ବ ସାଧାରଣ ମଧ୍ୟ ଏହି ସମୟରେ ଠାକୁରମାନଙ୍କୁ ଦର୍ଶନ କରିପାରନ୍ତି ନାହିଁ ।

ଜ୍ୟେଷ୍ଠ ପୂର୍ଣ୍ଣିମାରେ 'ସ୍ନାନ ଉତ୍ସବ' ପାଇଁ ଆସିଥିବା ଠାକୁରମାନେ ଶ୍ରୀଗୁଣ୍ଡିଚା ଦିନ ରଥଯାତ୍ରା କରି, ବାହୁଡାପରେ ଶ୍ରୀମନ୍ଦିରକୁ ଫେରିବା ପର୍ଯ୍ୟନ୍ତ ସେମାନଙ୍କର ପବିତ୍ର ଅସ୍ଥାନ 'ରତ୍ନ ସିଂହାସନ' ଖାଲି ପଡିଥାଏ ।

ଉଭୟ ଶ୍ରୀମନ୍ଦିର ଓ ଗୁଣ୍ଡିଚାଘରେ ଅନ୍ୟାନ୍ୟ ସେବକମାନେ ଶ୍ରୀ ଜୀଉଙ୍କ ସେବା କରନ୍ତି । କିନ୍ତୁ ଏହି ମାସେକାଳ ଦଇତାମାନଙ୍କ ସେବାର ଅଧିକ ଆବଶ୍ୟକତା ଥାଏ । ଏହି ବିଭିନ୍ନ ସେବକମାନଙ୍କର ଭିନ୍ନ ଭିନ୍ନ ସେବା ଭିତରେ ଦେଖିବାକୁ ମିଳେ ସହଯୋଗ ଓ ଏକତାର ଭାବନା । ସବୁ ଯେପରି ନିୟମିତ ଭାବରେ ହେଉଛି, ସେହି ବଳିଆରଭୁଜ କାଳିଆ ସାଆନ୍ତଙ୍କ ପାଇଁ ।

ଛତିଶାନିଯୋଗ, ଭିତର ସେବକ, ବାହାର ସେବକମାନଙ୍କ ସେବା ପ୍ରତି ନଜର ଦେଲେ ମନେ ହେବ, ସେମାନେ ସମସ୍ତେ ଗୋଟିଏ ଲମ୍ବା ଶିକୁଳିର ଅଂଶ ବିଶେଷ । ଜଣେ ଆଉ ଜଣକୁ ଛନ୍ଦି ରଖିଛନ୍ତି । ଏଥିରେ ସମସ୍ତଙ୍କର ଆବଶ୍ୟକତା ଅଛି । କୌଣସି ଗୋଟିକୁ ବି ଛାଡି ହେବ ନାହିଁ । ଏମାନଙ୍କ ଭିତରେ ଅଛନ୍ତି, ଓଡିଶାର ଗଜପତିଙ୍କଠାରୁ ଆରମ୍ଭ କରି ରଥ ନିର୍ମାଣ କରୁଥିବା ବଢେଇ, ରଥ ଦଉଡି ବଳୁଥିବା ଭୋଇ । ଏ ସମସ୍ତଙ୍କର ଜଗନ୍ନାଥଙ୍କ ସେବା ଉପରେ ଅଧିକାର ଓ ସେଥିପାଇଁ ତାଙ୍କଠାରୁ ଖେଇ ବା ପାରିଶ୍ରମିକ ପାଇବାରେ ହକ୍ । ଯାହାକି ପ୍ରସାଦ ଆକାରରେ ସେବା ବା ପାଳି ଖଟିବା ପରେ ସେମାନଙ୍କୁ ଦିଆଯାଏ ।

ଜଗନ୍ନାଥ ଧର୍ମ-ସଂସ୍କୃତିରେ କେହି ଛୋଟ ବା କେହି ବଡ଼ ନୁହନ୍ତି । ସମସ୍ତେ ସମାନ । ପ୍ରଭୁ ସମସ୍ତଙ୍କର ସ୍ରଷ୍ଟା, ଆଉ ହର୍ତ୍ତା କର୍ତ୍ତା ଦଇବ ବିଧାତା ।

ଜନ୍ମ ଅନୁସାରେ ନୁହେଁ, ଗୁଣ କର୍ମକୁ ନେଇ ସେ ବର୍ଣ୍ଣ ବା ଜାତିଗଠନ କରିଛନ୍ତି ବୋଲି ଯାହା ଗୀତାରେ କହିଛନ୍ତି, ତାହା ସତ । ସବୁ ଜାତି ତାଙ୍କର ଅଂଗ ବିଶେଷ । ସେଥିପାଇଁ ତାଙ୍କର ଶ୍ରେଷ୍ଠ ସେବକ, ଯାହାଙ୍କୁ କି ଲୋକେ ଚଳନ୍ତି ଠାକୁର କହନ୍ତି, ସେହି ରାଜା, ତାଙ୍କ ପାଖରେ ନିକୃଷ୍ଟତମ ସେବକର ସେବା ଅର୍ଥାତ୍ ଛେରା ପହଁରା କରନ୍ତି । କାରଣ ସେବା ବା କାମରେ ଛୋଟ ବଡ ବୋଲି କୌଣସି ଭେଦଭାବ ନାହିଁ ।

ପ୍ରତିବର୍ଷ ଗୁଣ୍ଡିଚା ଓ ବାହୁଡା ଯାତ୍ରା ସମୟରେ ଗଜପତି ମହାରାଜା, ରଥଟଣା ଅଗରୁ ତିନିଗୋଟି ରଥରେ, ଯେଉଁ ଛେରା ପହଁରା କରନ୍ତି, ତାହାର ଦୃଶ୍ୟ ଜନମାନସରେ ଅପୂର୍ବ ଶିହରଣ ସୃଷ୍ଟି କରେ । ରାଜକୀୟ ଗର୍ବ, ଅହଂକାର, ଅହମିକା ଯେ କିଛି ନୁହେଁ, ଏଥିରୁ ଜଣା ପଡେ ।

## ଭକ୍ତର ଭଗବାନ

ଅନେକ ରାଜା, ମହାରାଜା, ଧନୀ, ମାନୀ, ସାଧୁ, ସନ୍ଥ, ମହନ୍ତ, ସାଧକ, ସେବକ ଓ ଶାସକମାନେ ଜଗନ୍ନାଥଙ୍କ ପାଖରେ ବେଖାତିର ଭାବ ବା ବଡ ପଣିଆ ଦେଖାଇ ଥିବାରୁ ମନ୍ଦ ଦଶା ଭୋଗିଛନ୍ତି । ସେ ସମ୍ବନ୍ଧରେ ଅନେକ କିମ୍ବଦନ୍ତୀ ବା କାହାଣୀ ଅଛି । ସେଇପରି ଯିଏ ଯେଉଁ ଜାତିର ବା ଧର୍ମର ହେଉ, ଯେଉଁଠି ବା ଯେତେବେଳେ ହେଉ, ଆବେଗଭରା ହୃଦୟରେ ଏହି ଭାବ ବିନୋଦିଆ ଠାକୁରଙ୍କୁ ଡାକିଛି, ସେତେବେଳେ ଠାକୁର ଡାକିଥିବା ଲୋକ ପାଖରେ ତାର ଇଚ୍ଛା ପୂରଣ କରିବା ପାଇଁ ପହଞ୍ଚି ଯାଇଛନ୍ତି । ଏହାର ମଧ୍ୟ ଅନେକ ଦୃଷ୍ଟାନ୍ତ ଅଛି ।



ଜଣେ ବ୍ରାହ୍ମଣଙ୍କର ଭାରି ଗର୍ବ । ସେ ଭାବିଥିଲେ, ଏକାକୀ ଜଗନ୍ନାଥଙ୍କୁ ସେ ଭୋଗ ଦେଇ ପାରିବେ । ନୀଚ ଜାତିର ଲୋକଙ୍କ ଭୋଗ ସେ ଗ୍ରହଣ କରିବେ ନାହିଁ । ବିଚରା ଦାସିଆ ବାଉରି ପଠାଇଥିବା ନଡିଆଟିକୁ ଦାସିଆ କହିବା ଅନୁସାରେ ସେ ଜଗନ୍ନାଥଙ୍କୁ ବଢାଇ ଦେବାମାତ୍ରେ ଜଗନ୍ନାଥ ନିଜ ହାତରେ ସେ ନଡିଆଟିକୁ ନେଇଗଲେ । ତାହା ଦେଖି ବ୍ରାହ୍ମଣଙ୍କ ଅହଂକାର ମାଟିରେ ମିଶିଗଲା ।

ଠିକ୍ ସେହିପରି ଆଉ ଜଣେ ଯବନ ଭକ୍ତ ସାଲବେଗ । ଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ ଆକୁଳ ପ୍ରାର୍ଥନା କରିବାରୁ ରଥ ଉପରେ ସାଲବେଗ ଆସିବା

ପର୍ଯ୍ୟନ୍ତ ବଡଦାଣ୍ଡରେ ଜଗନ୍ନାଥ ଅଟକି ରହିଲେ । ବଳରାମ ଦାସଙ୍କ ଉପରେ କେତେକ ସେବକଙ୍କର ଅତ୍ୟାଚାର ଯୋଗୁ ସେ ପ୍ରତିବାଦ କରି ରଥକୁ ଉଚ୍ଛେ ସୁଦ୍ଧା ଘୁଞ୍ଚାଇ ଦେଇ ନାହାନ୍ତି । ଦାସେ ତାଙ୍କୁ ରଥରେ ଦର୍ଶନ କରି ରଥ ନ ଟାଣିବା ଯାଏ ରଥ ଚଳିନାହିଁ । ରାମଭକ୍ତ ତୁଳସୀ ଦାସଙ୍କୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ରାମ, ଲକ୍ଷ୍ମଣ, ସୀତା ଓ ହନୁମାନଙ୍କ ଭଳି ଦେଖାଦେଇଥିଲେ । ପ୍ରସିଦ୍ଧ ଗଣପତି ଉପାସକ ଗଜପତି ଭଟ୍ଟଙ୍କୁ ଦେବସ୍ନାନ ପୂର୍ଣ୍ଣିମାଦିନ ଗଣେଶ ରୂପରେ ମହାପ୍ରଭୁ ଦର୍ଶନ ଦେଇଥିଲେ ବୋଲି କୁହାଯାଏ । ପ୍ରକୃତରେ ଏହି ଦିନ ଠାକୁର ଗଜାନନ ବେଶ ହୁଅନ୍ତି ।

ସେହିପରି ସୁଦୂର ଦକ୍ଷିଣରେ ଆଲ୍ଲାର ବନ୍ଦାଚାର୍ଯ୍ୟ ନାମକ ଜଣେ ଭକ୍ତ ଚାଲି ଚାଲି ଆସି ଶ୍ରୀକ୍ଷେତ୍ରରେ ପହଞ୍ଚିଲେ । ପ୍ରଭୁଙ୍କୁ ଦର୍ଶନ କରିବାକୁ ତାଙ୍କର ଜିଦ୍ । ଏଣେ ସେତେବେଳେକୁ ପ୍ରଭୁ ଅଣସରରେ । ଗୁପ୍ତ ପୂଜା । ଦର୍ଶନ ମନା । କରିବେ କ'ଣ ? ମନେ ମନେ ବିଚାରିଲେ, ଠାକୁରଙ୍କୁ ଜର, ଏସବୁ ବାଜେ କଥା ! ଯଦି ଠାକୁରଙ୍କ ଦର୍ଶନ ନ ମିଳିଲା, ତାହେଲେ ଆଉ ଏ ଜୀବନରେ ପ୍ରୟୋଜନ କଣ ? ଏହାକୁ ସମୁଦ୍ରରେ ଝାସ ଦେବାକୁ ହେବ । କିନ୍ତୁ ମଶାଣି ମହାବୀର ପାଖରେ ହଠାତ୍ ଏକ ବାନର ବାହାରିଲେ । ସେ ଆଚାର୍ଯ୍ୟଙ୍କର ଗତିପଥ ବଦଳାଇ ଦେଲେ । ସେ ସମୁଦ୍ର ଆଡକୁ ମୁହାଁଇବା ବଦଳରେ ମୁହାଁଇଲେ ବ୍ରହ୍ମଗିରି ଆଡେ । ଚାଲି ଚାଲି ବେଦମ ହୋଇପଡିଲେ । କୁଆଡେ ଗଲା ସମୁଦ୍ର, ବିଚାରିଲେ ! ଭଗବାନଙ୍କର ବି ଏହା ମାୟା । ତେଣୁ ସ୍ଥିର କଲେ, ସମୁଦ୍ର ନହେଲା ନାହିଁ ନିକଟସ୍ଥ ବଣ ଜଙ୍ଗଲରୁ ଶୁଖିଲା କାଠପତ୍ର ସଂଗ୍ରହ କରି ସେଥିରେ ନିଆଁ ଲଗାଇବେ । ସେହି ନିଆଁରେ ଶେଷକୁ ଡେଇଁ ପଡି

ଜଗନ୍ନାଥଙ୍କର ଦର୍ଶନ ପାଉନଥିବା ତାଙ୍କର ଅଲୋଡା ପ୍ରାଣକୁ ଆହୁତି ଦେଇଦେବେ । ସତକୁ ସତ ସେ କାଠ ସଂଗ୍ରହ କରି ନିଆଁ ଲଗାଇଲେ । କିନ୍ତୁ ଯେତେବେଳେ ସେହି ଅଗ୍ନିକୁ ଡେଇଁ ପଡିବାକୁ ବାହାରନ୍ତି, ଠିକ୍ ସେତିକିବେଳେ ଜଗନ୍ନାଥ ସେଠାରେ ଆବିର୍ଭୂତ ହେଲେ ଶ୍ରୀକୃଷ୍ଣ ରୂପରେ । କିନ୍ତୁ ଶରୀରର ଅନେକ ସ୍ଥାନରେ ଅସୁସ୍ଥତାର ଚିହ୍ନ । ଆଚାର୍ଯ୍ୟଙ୍କୁ କହିଲେ, 'ଏ ସମୟରେ ମାତ୍ର ପନ୍ଦର ଦିନ ପାଇଁ ମୋତେ ଦର୍ଶନ କରିବା ମନା । କାରଣ ଏ ସମୟରେ ମୁଁ ରୋଗୀ । ତଥାପି ମୋତେ ଯେଉଁମାନେ ଏ ସମୟରେ ଦର୍ଶନ କରିବାକୁ ବ୍ୟାକୁଳ, ସେମାନେ ଏଠାକୁ ଆସିବା ଉଚିତ୍ । ଏଠାରେ ମୁଁ ଏହି ସମୟରେ ବିରାଜିତ ରହିବି ।' ସତକୁ ସତ ସେହିଦିନଠାରୁ, ସେଠାରେ ଅଲାରନାଥଙ୍କ ପୂଜା ଆରମ୍ଭ ହେଲା । ଚୈତନ୍ୟ ଏବଂ ଜଗନ୍ନାଥଙ୍କର ଅନ୍ୟ କେତେକ ମହାନ ଭକ୍ତ ଅନବସର ସମୟରେ ସେଠାରେ ମହାପ୍ରଭୁଙ୍କ ଦର୍ଶନ କରିବାକୁ ରହୁଥିଲେ । ଏବେ ମଧ ଅନବସର ସମୟରେ ଅଲାରନାଥଙ୍କ ପାଖରେ ଜଗନ୍ନାଥଙ୍କ ଭକ୍ତମାନଙ୍କର ପ୍ରବଳ ଭିଡ ହୁଏ । ପୁରୀଠାରୁ ପ୍ରାୟ ଚଉଦ କିଲୋମିଟର ଦୂର, ବ୍ରହ୍ମଗିରିରେ ଏହି ଠାକୁରଙ୍କ ମନ୍ଦିର ଅଛି ।

ମହାରାଷ୍ଟ୍ରର କର୍ମାବାଈ, ସେହିଭଳି ଆଉ ଜଣେ ଭକ୍ତ । ଜଗନ୍ନାଥଙ୍କ ଦର୍ଶନରେ ମୁଗ୍ଧ ହୋଇ ସେ କେବଳ କ୍ଷେତ୍ରବାସ କଲେ ନାହିଁ, ନିଜର ରୋଷଶାଳରେ ଖେଚଡି ରାନ୍ଧି ଜଗନ୍ନାଥଙ୍କୁ ଭୋଗ ଲଗାଇଲେ । ସେ ଖେଚଡିରେ ଜଗନ୍ନାଥଙ୍କର ମନ ଅତି ଭଜିଗଲା । ଷାଠିଏ ପଉଟି ଏବଂ ଛପନ ଭୋଗ ଖାଉଥିବା ପ୍ରଭୁ ଶ୍ରୀମନ୍ଦିର ଭୋଗ ଛାଡି, କର୍ମାବାଈଙ୍କ ଖେଚଡି ପାଇଁ ତାଙ୍କ ଘରେ ଯାଇ ପହଞ୍ଚିଲେ । ଏଣେ ପୂଜା ସମୟରେ ପଣ୍ଡାଙ୍କ ଚକ୍ଷୁରେ

ଜଗନ୍ନାଥେ ଆଉ ଦେଖାଦେଲେ ନାହିଁ। ପ୍ରତ୍ୟେକ ଦିନ ସକାଳ ଧୂପ ଖେଚଡି ବଡା ହେଲାବେଳେ, କୌଣସି ନା କୌଣସି କାରଣରୁ ଭୋଗ ମାରା ହେବାକୁ ଲାଗିଲା । ଭାଳେଣି ପଡିଲା। କାରଣ କ'ଣ ? ଅବଶେଷରେ ଜଣାଗଲା ଜଗନ୍ନାଥେ ଖେଚଡି ଖାଇବାକୁ ଶ୍ରୀମନ୍ଦିର ଛାଡି ଚାଲିଯାଉଛନ୍ତି । ତେଣୁ କର୍ମାବାଈଙ୍କୁ ମନ୍ଦିର ଭିତରେ ଶ୍ରୀରାମ ଦାସ ମଠ ଚୁଲିରେ ଖେଚଡି ରାନ୍ଧିବାକୁ ଅନୁମତି ଦିଆଗଲା। ସେହିଦିନଠାରୁ ଖେଚଡି ରନ୍ଧା ହାଣ୍ଡିର ନାମ ହେଲା **'ବାଈ ହାଣ୍ଡି'** । ଭୋଗର ନାମ ହେଲା **'ମହାଦେଈ ଭୋଗ'** ।

ସେହିପରି କବି ବିଦୁରଙ୍କ କଥା। ସେ ସ୍ୱର୍ଗ ଦ୍ୱାରରେ ଛତା ପକାଇ ରହୁଥିଲେ। ଖୁଦରେ ପିଠା କରି ଜଗନ୍ନାଥଙ୍କୁ ପ୍ରତ୍ୟେକ ଦିନ ଭୋଗ ଲଗାଉ ଥିଲେ । ଭକ୍ତର ଭକ୍ତିରେ ବଶ ହୋଇ ଜଗନ୍ନାଥ ପ୍ରତ୍ୟେକ ଦିନ ସେଠାରେ ଭୋଗବେଳକୁ ହାଜର। ତେଣୁ ମନ୍ଦିରରେ ଯେତେବେଳେ ପୂଜକଙ୍କ ଚକ୍ଷୁରେ ଜଗନ୍ନାଥ ଦିଶିଲେ ନାହିଁ, ଭାଳେଣି ପଡିଲା। ଶେଷକୁ ଜଣା ପଡିଲା, ବିଦୁରଙ୍କ ଭୋଗ ହିଁ ଏହାର କାରଣ । ସେହିଦିନଠାରୁ ଛପନ ଭୋଗରେ ସୁଆର ପିଠା ନାଆଁରେ ତିନି ଗୋଟି ଖୁଦ ପିଠାର ପ୍ରଚଳନ ହେଲା ।

ଦୂର ଦୂରାନ୍ତରରୁ ଆଉ ଜଣେ ଭକ୍ତ ମନୋହର ଦାସ ଚାଲି ଚାଲି ଜଗନ୍ନାଥ ଦର୍ଶନକୁ ଆସୁଥିଲେ। ବାଟରେ ଗୋଟିଏ ପୋଖରୀରେ ଅନେକ ପଦ୍ମ ଫୁଲ ଫୁଟିଥିବାର ଦେଖିଲେ । ଜଗନ୍ନାଥଙ୍କୁ ସେହି ଫୁଲ ସବୁ ଲାଗି କରିବାକୁ ଫୁଲମାନ ତୋଳିଲେ । ସେଗୁଡିକୁ ଗୋଟିଏ କଳାକନାରେ ବାନ୍ଧି, ପୁରୁଷୋତ୍ତମକୁ ନେଇ ଆସିଲେ । କିନ୍ତୁ ବାଟରେ ଅନେକ ଦିନ ଲାଗି ଯିବାରୁ ଫୁଲଗୁଡିକ ମଉଳି ଯାଇଥିଲା। ସେ ସେହି ଫୁଲଗୁଡିକୁ ପ୍ରଭୁଙ୍କୁ ଲାଗି କରିବାକୁ ସେବକଙ୍କୁ



ଅନୁରୋଧ କଲେ । କିନ୍ତୁ ସେବକ ଫୁଲ ମଉଳି ଯାଇଥିବାରୁ ଲାଗି କରିବାକୁ ମନା କଲେ । ଫଳରେ ମନୋହର ଦାସ ଦୁଃଖରେ ହଠାତ୍ ମୂର୍ଚ୍ଛା ହୋଇ ତଳେ ପଡିଗଲେ । କିନ୍ତୁ ପରେ ଜଗନ୍ନାଥଙ୍କୁ ଏହି ଫୁଲଗୁଡିକ ପିନ୍ଧିବାକୁ ଅକୁଳ ନିବେଦନ କଲେ । ଆଶ୍ଚର୍ଯ୍ୟ କଥା, କିଛି ଦିନ ପରେ ଦେଖାଗଲା, ଫୁଲଗୁଡିକ କ୍ରମେ ସତେଜ ହୋଇ ଆସୁଛି । ପରେ ଜଗନ୍ନାଥ ସେଗୁଡିକୁ ସେହି କଳାକନା ସହ ଗ୍ରହଣ କଲେ । ସେହିଦିନାଠାରୁ ପ୍ରତ୍ୟେକ ବର୍ଷ ମାଘ ମାସ ଅମାବାସ୍ୟାଠାରୁ ବସନ୍ତ ପଞ୍ଚମୀ ପୂର୍ବରୁ କୌଣସି ବୁଧବାର ବା ଶନିବାର ଦିନ କଳାକନା ସହିତ ସୋଲ ପଦ୍ମ ଫୁଲରେ ଠାକୁରମାନେ ବେଶ ହୁଅନ୍ତି । ଏହାକୁ 'ପଦ୍ମବେଶ' କୁହାଯାଏ ।

ଆଉ ଜଣେ ଭକ୍ତ ମାଧବ ଦାସ । ସେ ଅତି ବୁଢା ହୋଇ ବେମାର ପଡିଲେ । ଜଗନ୍ନାଥ ଓ ବଳଭଦ୍ର ଦୁଇଟି ବାଳକ ରୂପରେ ତାଙ୍କର ସେବା କଲେ ।

ଏହାଛଡା ଯବନ ଭକ୍ତ ହରି ଦାସ ଓ ଖ୍ରୀଷ୍ଟାନ୍ ଭକ୍ତ ଜାହାଜର କ୍ୟାପ୍‌ଟେନ୍‌ଙ୍କ କଥା କିଏ ବା ନ ଜାଣେ ? ସିଦ୍ଧ ବକୁଳ ପୀଠରେ ଚୈତନ୍ୟ ରହୁଥିବା କାଶୀ ମିଶ୍ରଙ୍କ ଘରକୁ ଏବେ ରାଧାକାନ୍ତ ମଠ କୁହାଯାଉଛି । ଏଠାରେ ଗୋଟିଏ ବଉଳ ଗଛ ଅଛି । ତାରି ମୂଳରେ ହରି ଦାସ ତପ କରି ସିଦ୍ଧି ଲାଭ କରିଥିଲେ । ଏହାପରେ ଚୈତନ୍ୟ ହରି ଦାସଙ୍କ ମର ଶରୀରକୁ ସଙ୍କୀର୍ତ୍ତନ ମାଧ୍ୟମରେ ଉପରକୁ ଉଠାଇ ଦେଇଥିଲେ ।

ସେହିପରି ଖ୍ରୀଷ୍ଟାନ ଭକ୍ତ କ୍ୟାପଟେନ୍‌ଙ୍କ କଥା । ତାଙ୍କ ଜାହାଜ ଗଲାବେଳକୁ ବଙ୍ଗୋପସାଗରରେ ପ୍ରବଳ ଝଡ ତୋଫାନ ହେଲା । ମହାପ୍ରଭୁଙ୍କୁ ପ୍ରାର୍ଥନା କରିବା ଫଳରେ ଜାହାଜଟି ବିପଦମୁକ୍ତ ହୋଇଥିଲା ଏଥିରେ ଗୋଆର ଗିର୍ଜା ପାଇଁ ବିରାଟ ଘଣ୍ଟାଟିଏ ନିଆଯାଉଥିଲା । ତାହା ଆଉ ଗୋଆକୁ ନ ନେଇ ସେ ଶ୍ରୀମନ୍ଦିରକୁ ଦାନ କଲେ । ସେହି ଘଣ୍ଟାଟି ଏବେ ମଧ୍ୟ ଅଛି ।

ଏଭଳି ଆହୁରି ଅନେକ ଘଟଣା ରହିଛି । ଲକ୍ଷ୍ୟ କରିବାର କଥା – ଏହି ଅଭିଜ୍ଞତା ବା ଘଟଣା ଭାରତର ବା ପୃଥିବୀର କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳ ବା ଧର୍ମାଧାରୀ ବ୍ୟକ୍ତିମାନଙ୍କୁ ନେଇ ଘଟି ନାହିଁ । ଏସବୁ ପଛରେ ଅଛି ମଣିଷ ମନର ବିଶ୍ୱାସ ।

ଜଗନ୍ନାଥ ଧର୍ମ ଅନାର୍ଯ୍ୟ, ଆର୍ଯ୍ୟ, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ୍, ଜୈନ, ବୌଦ୍ଧ, ଶିଖ ସବୁ ଧର୍ମର ଚିନ୍ତା ଚେତନା ବା ମତବାଦକୁ ଆବୋରି ବସିଛି । ସବୁଥିରେ ସେ । କିନ୍ତୁ କୌଣସି ଗୋଟିକରେ ତାହା ସୀମାବଦ୍ଧ ନୁହେଁ । ସ୍ଥୂଳ ଅର୍ଥରେ ଜଗନ୍ନାଥଙ୍କୁ ହିନ୍ଦୁ ଦେବତା ବୋଲି କୁହାଯାଉ ଥାଏ । କିନ୍ତୁ ସେ ପ୍ରକୃତରେ ସମଗ୍ର ମନୁଷ୍ୟ ସମାଜର ଦେବତା । ସେଥିପାଇଁ ସମ୍ଭବତଃ ଆଜି ସାରା ଦୁନିଆରେ ସୁଦୂର ନିୟୁଅର୍କଠାରୁ ଆରମ୍ଭ କରି ଲଣ୍ଡନ, କାଲିଫର୍ଣ୍ଣିଆ, ଜାପାନ, ସିଂହଳ, ଫିଲିପାଇନ ପର୍ଯ୍ୟନ୍ତ ସର୍ବତ୍ର ଜଗନ୍ନାଥଙ୍କର ବିଖ୍ୟାତ ପର୍ବ ରଥଯାତ୍ରା ଅନୁଷ୍ଠିତ ହେଉଛି । ଠାଏ ଠାଏ ଜଗନ୍ନାଥଙ୍କ ମନ୍ଦିର ବି ତିଆରି ହେଲାଣି ।

## ରଥ ଯାତ୍ରାର ମାହାତ୍ମ୍ୟ

ବର୍ତ୍ତମାନ ଦେଖାଯାଉ ରଥଯାତ୍ରାର ମାହାତ୍ମ୍ୟ । ଏହାର ଉଦ୍ଦେଶ୍ୟ ଓ ଏହାର ଅନୁଷ୍ଠାନ । ସ୍ନାନ ପୂର୍ଣ୍ଣିମା ପରେ ପନ୍ଦର ଦିନ ଅଣସର ଶେଷରେ ତିନିଗୋଟି ନୂତନ ରଥରେ, ଚାରିଗୋଟି ଦାରୁ ମୂର୍ତ୍ତି, ଚଳନ୍ତି ପ୍ରତିମା ମଦନ ମୋହନ ପ୍ରଭୃତିଙ୍କ ସଙ୍ଗେ ଗୁଣ୍ଡିଚା ମନ୍ଦିର ବା ଆଡପ ମଣ୍ଡପକୁ ଯାତ୍ରା କରନ୍ତି । ଏହି ଅଡପ ମଣ୍ଡପ ପୁଣି କ'ଣ ? ଏହାହେଉଛି, ଜଗନ୍ନାଥଙ୍କ ଜନ୍ମ-ପୀଠ । ଭାସୁଥିବା ଦାରୁକୁ ଉଭୟ ଇନ୍ଦ୍ରଦ୍ୟୁମ୍ନ ଓ ବିଶ୍ୱାବସୁ ଏଠାକୁ ଆଣି ଜଣେ ବୃଦ୍ଧ ମହାରଣାଙ୍କ ଦ୍ୱାରା ଏ ତିନିଠାକୁରଙ୍କ ମୂର୍ତ୍ତି ନିର୍ମାଣ କରାଇଥିଲେ । ତାହା ପୁଣି ଗୋଟିଏ ସର୍ତ୍ତରେ । ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଦ୍ୱାର ବନ୍ଦ ରଖିବାକୁ ସ୍ଥିର ହୋଇଥିଲା । ଦ୍ୱାର ମଧ୍ୟ ବନ୍ଦ ହୋଇଥିଲା । କିନ୍ତୁ କିଛି ଦିନ ପରେ ଶିଳ୍ପୀଙ୍କର

ନିହାଣ ହାତୁଡିର ଶବ୍ଦ ଶୁଣାଗଲା ନାହିଁ। ତେଣୁ ରାଜା ବ୍ୟସ୍ତ ହୋଇ ଦ୍ୱାର ଖୋଲି ଦେଲେ। ଫଳରେ ଦେଖାଗଲା ଶିଳ୍ପୀ ଅନ୍ତର୍ଦ୍ଧାନ ହୋଇଛନ୍ତି ଏବଂ ମୂର୍ତ୍ତିଗୁଡିକ ଅପୂର୍ଣ୍ଣ ଅଛି। ଆକାଶରୁ ଶୂନ୍ୟ ବାଣୀ ହେଲା – 'ରାଜା ! ତୁମେ ସେହି ମୂର୍ତ୍ତିମାନଙ୍କୁ ନେଇ ଶ୍ରୀମନ୍ଦିରରେ ପ୍ରତିଷ୍ଠା କରି ପୂଜା ଅର୍ଚ୍ଚନା ଆରମ୍ଭ କର।''

ଗୁଣ୍ଡିଚାର ନାମକରଣ ବିଷୟରେ ନାନା ମତ ଅଛି। କିଏ କହେ ତେଲୁଗୁ ଶବ୍ଦ ଗୁଡିଶା (କୁଡିଆ ଘର)ରୁ ଗୁଣ୍ଡିଚା ଆରମ୍ଭ ହୋଇଛି। ଆଉ କିଏ କହେ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ପାଟରାଣୀ ଗୁଣ୍ଡିଚାଙ୍କ ନାମରେ ଏହାର ନାମ ଦିଆଯାଇଛି। ସେ ଯାହା ହେଉନା କାହିଁକି, ସେଦିନ ଏହି ଆଦ୍ୟ ମୂର୍ତ୍ତି ନିର୍ମାଣ ଘରୁ ମହାପ୍ରଭୁ ରଥ ଉପରେ ବସି ଶ୍ରୀମନ୍ଦିରକୁ ଯାତ୍ରା କରିଥିଲେ। ତାହା ହେଉଛି, ଆଷାଢ, ଶୁକ୍ଳ ଦ୍ୱିତୀୟା ଦିନ ତେଣୁ ଏହାର ସ୍ମାରକୀ ସ୍ୱରୂପ ପ୍ରତିବର୍ଷ ଗୁଣ୍ଡିଚା ଯାତ୍ରା ଏହି ଦିନ। ଅନୁଷ୍ଠିତ ହୁଏ। ଜନ୍ମମାଟିର ଆକର୍ଷଣ ଗର୍ଭଧାରିଣୀ ଜନନୀଙ୍କ ଅପେକ୍ଷା ବି ଅଧିକ। ଜଗନ୍ନାଥ ଡାକିଲେ ଶୁଣିବା ଦେବତା। ସେ ମଣିଷ ଭଳି ଆଚରଣ କରନ୍ତି। ଏହି ଜନ୍ମ ମାଟିର ମମତା ବା ସେ ଏଡେଇ ଦେବେ କିପରି ?

ଖାଲି ସେତିକି ନୁହେଁ ବିଭିନ୍ନ ଜାତି ଓ ଧର୍ମର ଭକ୍ତ ବା ପତିତ ଜନଙ୍କୁ ଦେଖା ଦେବାକୁ ସେ ପତିତପାବନ ରୂପରେ ଶ୍ରୀମନ୍ଦିରର ପୂର୍ବ ପଟ ସିଂହ ଦ୍ୱାର ପାଖରେ ବସି ରହିଛନ୍ତି। ସେହି ଭକ୍ତମାନଙ୍କୁ ଥରେ ଆଲିଙ୍ଗନ କରିବାକୁ, ସେମାନଙ୍କ ସହିତ କୋଳାକୋଳି ହେବାକୁ ସେ ବାହାରକୁ ଆସନ୍ତି। ଯେଉଁମାନେ

ମନ୍ଦିର ଭିତରକୁ ଆସୁଛନ୍ତି, ସେମାନେ ତାଙ୍କୁ ଦର୍ଶନ କରିବେ । କିନ୍ତୁ ଯେଉଁମାନେ ଧର୍ମର ବ୍ୟବଧାନ ହେତୁ ବା ଅନ୍ୟ କୌଣସି କାରଣରୁ ମନ୍ଦିରକୁ ଆସିପାରୁ ନାହାନ୍ତି ସେମାନଙ୍କୁ ସେ ଆପଣାର କରିବେନି ? ସେମାନଙ୍କୁ ଆଦର ବା ସ୍ନେହ ସମ୍ଭାଷଣରେ କିଛି ସମୟ ପାଇଁ ହେଲେ ବି ଗଳାର ମାଳାଇ ଦେବେ ନି ? ନିଶ୍ଚୟ ଦେବେ । କାରଣ ସେ ପରା ଭକ୍ତ ବତ୍ସଳ । ପୁଣି ଜଗତର ନାଥ, ବିଶ୍ୱର ନିୟନ୍ତା ।

ଜଗନ୍ନାଥ ଆସନ୍ତି । ପହଣ୍ଡି ହୋଇ ରଥରେ ଚଢନ୍ତି । ମନ୍ଦିରର ପଥର ଅଗଣା, ବାଇଶି ପାହାଚର ପଥର ଚଟାଣ ଆଙ୍କୁ ସିଂହଦ୍ୱାରର ରାସ୍ତା ଉପରେ ବେଶ୍ ଛେଚା କଚଡା ଖାଇ ପ୍ରିୟ ସେବକ ଦଇତାମାନଙ୍କ ଦ୍ୱାରା ବନ୍ଧା ହୋଇ ଆସନ୍ତି ଜଗନ୍ନାଥ । ଅସୁସ୍ଥ ଶରୀର ସୁସ୍ଥ ହେବାର ଠିକ୍ ପରେ ପରେ। ପୁଣି କେତେ ବେଳେ ? ଅସଲ ବର୍ଷା ଦିନରେ । ବାହାରେ ପାଣି ପବନ ଖାଇ ହୁଏତ ଜର ପୁଣି ଓଲଟି ପଡିବ । କିନ୍ତୁ ସେ ସବୁ ପ୍ରତି ନିଘା ନ ଥାଏ । କର୍ତ୍ତବ୍ୟ କରିଯିବାକୁ ହେବ । "ପତିତପାବନମୋର ଧର୍ମ । ସେହି ଧର୍ମ ଆଚରଣରେ ମୋତେ କେହି ବାଧା ଦେଇ ପାରିବେ ନାହିଁ କିମ୍ବା କୌଣସି ବ୍ୟକ୍ତିଗତ ଲୋଭ, ସ୍ୱାର୍ଥ ବା ଆକର୍ଷଣ ସେଥିରୁ ମୋତେ ହଟାଇ ପାରିବ ନାହିଁ। "

ସେତେବେଳେ ତାହା ହେଉଛି – ଜଗନ୍ନାଥଙ୍କର ଚିନ୍ତା । ଭକ୍ତ ଭେଟିବେ । ସବୁକାମଠାରୁ ମୁଖ୍ୟ ହେଉଛି ଏହି କାମ । ତାର ଅଳ୍ପ ଦିନ ପୂର୍ବରୁ ଅର୍ଥାତ୍ ଜ୍ୟେଷ୍ଠ ଶୁକ୍ଳ ଏକାଦଶୀରେ ବୀର ଦର୍ପରେ ଶିଶୁପାଳକୁ ଯୁଦ୍ଧରେ ପରାସ୍ତ କରି ପ୍ରାଣପ୍ରିୟା ରୁକ୍ମିଣୀଙ୍କୁ ବିବାହ କରିଥିଲେ ହେଁ, ଚଉଠି ଦିନ

ତାଙ୍କର ହଠାତ୍ ଅସୁସ୍ଥତା ଯୋଗୁ ରୁକ୍ମିଣୀଙ୍କ ସଙ୍ଗେ ପ୍ରଣୟ ପୂର୍ଣ୍ଣାଙ୍ଗ ହୋଇନି ଅର୍ଥାତ୍ ଆମ ସାମାଜିକ ରୀତି ବା ଲୋକାଚାରରେ ମଧୁଶଯ୍ୟା ସମ୍ପୂର୍ଣ୍ଣ ହୋଇନି। କିନ୍ତୁ ଏବେ ସୁସ୍ଥ ହେଲା ପରେବି ସେହି କାର୍ଯ୍ୟକୁ ପଛକୁ ପକାଇ ଆଗ ଭକ୍ତ ବତ୍ସଳତାର ଦାୟିତ୍ୱ ତୁଲାଇବାକୁ ହେବ। ଅନେକ ଦିନ ଧରି ଅପେକ୍ଷା କରିଥିବା ଭକ୍ତମାନଙ୍କୁ ଆଗ ସମ୍ଭାଳି ଯିବାକୁ ପଡିବ। ବର୍ଷା ଋତୁରେ ଆଗାମୀ କୃଷି କାର୍ଯ୍ୟର ଜୟ ସଙ୍କେତ ଉଡାଇ ଦେବାକୁ ମଧ ହେବ।

ବାସ୍ତବିକ୍ ଏହି ରଥ ଉପରେ ବିଜେ ହୋଇଥିବା ଜଗନ୍ନାଥ-ବାମନଙ୍କୁ ଦର୍ଶନ କରି ମୋକ୍ଷ ପାଇଯିବାକୁ ଦେଶ ବିଦେଶରୁ ଲକ୍ଷ ଲକ୍ଷ ଲୋକଙ୍କର ସମାଗମ ହୁଏ। ଆନନ୍ଦ ଉଲ୍ଲାସ ଆଉ ଉଚ୍ଛ୍ୱାସରେ ସାରା ବଡଦାଣ୍ଡର ଗଗନ ପବନ ମୁଖରିତ ହୁଏ। ସମସ୍ତେ ଆନନ୍ଦିତ ମନରେ ପ୍ରଗତିର ସେହି ତିନି ରଥ- ତାଳଧ୍ୱଜ, ଦେବଦଳନ ଓ ନନ୍ଦିଘୋଷର ଦଉଡି ଗୁଡିକ କ୍ରମାନ୍ୱୟରେ ଟାଣନ୍ତି। ସମସ୍ତଙ୍କ ମୁହଁରେ ଗୋଟିଏ ଧ୍ୱନି। ଜୟ ବଳଭଦ୍ର, ଜୟ ସୁଭଦ୍ରା, ଜୟ ଜଗନ୍ନାଥ। ଚତୁର୍ଦ୍ଦିଗରେ ଏହି ଜୟଜୟକାରରେ ସମସ୍ତେ ବିଭୋର। ବିଶ୍ୱ କବି ରବୀନ୍ଦ୍ରନାଥଙ୍କ ଭାଷାରେ- 'ରଥ ବଲେ ଆମି ଦେବ, ପଥ ବଲେ ଆମି।' ଅର୍ଥାତ ରଥ, ପଥ, ନାଥ ଓ ଭକ୍ତ ସମସ୍ତେ ଏକାକାର ହୋଇଯାଆନ୍ତି। ସେହି ଗୋଟିଏ ଆକର୍ଷଣ, ସେହି ଗୋଟିଏ ଅନୁବନ୍ଧନ, ସେହି ଗୋଟିଏ ଅବଲମ୍ବନ। ଠାକୁରଙ୍କ ସମେତ ସମସ୍ତେ ସମସ୍ତଙ୍କୁ ଆଲିଙ୍ଗନ କର। ମହାନ ମୈତ୍ରୀ, ପ୍ରୀତି ଓ ଅନୁରାଗରେ ସମସ୍ତଙ୍କର ଶରୀର କେବଳ ନୁହେଁ, ଅନ୍ତର ଯେପରି ଭରପୂର ହୋଇଉଠୁ। ସମସ୍ତେ ସୁଖରେ ରୁହ। ଆନନ୍ଦିତ ହୁଅ। ଭଦ୍ର ହୁଅ। କାହାକୁ ଦୁଃଖ ସ୍ପର୍ଶ ନ କରୁ। ଉପନିଷଦର ଏହି ଅମର ବାଣୀ ସମସ୍ତଙ୍କ

ମନକୁ ଛୁଏଁ । ଗୀତାର ବାଣୀ 'ସର୍ବଭୂତ ହିତେ ରତା' ଏହା ଯେପରି ସମସ୍ତଙ୍କ ମନ ଓ ପ୍ରାଣର କଥା ହୋଇଯାଏ ।

ପ୍ରକୃତରେ ଏହି ମୈତ୍ରୀ ଦେବତା, ଜଗନ୍ନାଥଙ୍କ ପାଖରେ ପତିତପାବନ ଯାତ୍ରାରେ । ପତିତମାନଙ୍କର ମଙ୍ଗଳ କାମନା ନିଜେ ଜଗନ୍ନାଥ ହିଁ କରନ୍ତି ....

ପ୍ରସଙ୍ଗକ୍ରମେ ଏଠାରେ ଲକ୍ଷ୍ମୀ ନାରାୟଣ କଳି କଥା କୁହାଯାଇପାରେ । ପ୍ରତ୍ୟେକ ବର୍ଷ ରଥଯାତ୍ରାରେ ଠାକୁର ଗୁଣ୍ଡିଚା ମନ୍ଦିରରୁ ବାହୁଡି ଶ୍ରୀମନ୍ଦିରରେ ପ୍ରବେଶ କଲାବେଳେ ଜୟ ବିଜୟ ଦ୍ୱାର ପାଖରେ ଏହା ଅନୁଷ୍ଠିତ ହୁଏ ।

ଆଗରୁ କୁହାଯାଇଛି- ରୁକ୍ମିଣୀ ବିବାହ ପରେ ମଧୁଶଯ୍ୟା ପୂର୍ବରୁ ପତିତପାବନ ଯାତ୍ରାରେ ଭଉଣୀକୁ ସାଙ୍ଗରେ ଧରି ଜଗନ୍ନାଥ ଚାଲି ଆସନ୍ତି । ଲକ୍ଷ୍ମୀ ଠାକୁରାଣୀଙ୍କ ମନରେ ଏଥିପାଇଁ ଗଭୀର ଦୁଃଖ ଆଉ ଅଭିମାନ । ସେଥିପାଇଁ ହେରାପଞ୍ଚମୀ ଦିନ ଲକ୍ଷ୍ମୀ ରାଗ ଗରଗରରେ ଯାଆନ୍ତି । ସଂଧରେ ଜଗନ୍ନାଥଙ୍କ ଆଳତି ଦର୍ଶନ କଲା ପରେ, ତାଙ୍କ ରଥରୁ ଖଣ୍ଡେ ଭାଙ୍ଗି ଦିଅନ୍ତି । ତାପରେ ହେରାଗୌରୀ ସାହି ବାଟେ ମନ୍ଦିରକୁ ଫେରିଆସନ୍ତି ।

ଜଗନ୍ନାଥଙ୍କ ଭଳି ଗୋଟିଏ ଛୋଟିଆ କାଠ ବିଗ୍ରହଙ୍କ ନାମ ମାଧବ । ପୂର୍ବରୁ ଜଗନ୍ନାଥ ନୀଳମାଧବ ନାମରେ ପୂଜା ପାଉଥିଲେ । ଶ୍ରୀମନ୍ଦିରରେ, ରଥଯାତ୍ରାର ନଅଦିନ ସମୟରେ ଲକ୍ଷ୍ମୀଙ୍କ ପାଖରେ ଏହି ମାଧବ ରହିଥାଆନ୍ତି । ଲୋକାଚାରର ବିଚାର ଅନୁଯାୟୀ ଭଉଣୀକୁ ସାଙ୍ଗରେ ନେଇ ବୁଲିଯିବା ଅଥଚ ପ୍ରାଣପ୍ରିୟା ପତ୍ନୀଙ୍କୁ ନ ନେବା, ଲକ୍ଷ୍ମୀଙ୍କୁ ଭାରି ବାଧେ । ସେ ଭୀଷଣ ଅପମାନିତ ବୋଧ କରନ୍ତି ।

ମନ କଥା ମନରେ ଥାଏ । ମହାପ୍ରଭୁ ବାହୁଡା ଯାତ୍ରା ପରେ ଶ୍ରୀ ଅଥବା ଲକ୍ଷ୍ମୀଙ୍କ ମନ୍ଦିରକୁ ଫେରନ୍ତି । ବାଟରେ ରାଜାଙ୍କ ଶ୍ରୀନହର । ସେଠାରେ ଏବଂ ପରେ ଚାହାଣି ମଣ୍ଡପ ଉପରେ ମହାଲକ୍ଷ୍ମୀ ଜଗନ୍ନାଥଙ୍କୁ ପାଛୋଟି ଆଣିବାକୁ ଯାଇ ଆଳତି ଦ୍ୱାରା ଅଭିନନ୍ଦନ ଜଣାନ୍ତି । କିନ୍ତୁ ଭୁଲିପାରନ୍ତି ନାହିଁ ତାଙ୍କ ପ୍ରତି ଜଗନ୍ନାଥଙ୍କ ଅବିଚାର ।

ଜଗନ୍ନାଥ ପହଣ୍ଡି ହୋଇ ଜୟ ବିଜୟ ଦୁଆର ପାଖରେ ଆସି ପହଞ୍ଚିଲା ବେଳକୁ ଲକ୍ଷ୍ମୀ ତାଙ୍କୁ ଦ୍ୱାର କିଳି ଦିଅନ୍ତି । ବନ୍ଦ ହୋଇଥିବା ଦ୍ୱାର ପାଖରେ ସେବିକା ଦେବଦାସୀମାନେ ଥାଆନ୍ତି । ସେମାନଙ୍କ ଦ୍ୱାରା ଅଭିମାନ ଭରା ଭାଷାରେ ଲକ୍ଷ୍ମୀ କହନ୍ତି ଜଗନ୍ନାଥଙ୍କୁ, "ନାଁ, ଦୁଆର ଆଉ ତୁମ ପାଇଁ ଖୋଲା ଯିବନି । ତୁମେ ଜବାବ ଦିଅ, ଆଉ ଏପରି ଭୁଲ କରିବ ନାହିଁ। ଶ୍ରୀମନ୍ଦିର ଛାଡି ଆଉ କେବେ ବାହାରକୁ ଯିବ ନାହିଁ ।"

ଜଗନ୍ନାଥ ଲୋକାଚାର ଅନୁସାରେ ଲକ୍ଷ୍ମୀଙ୍କର ଅଭିମାନ ଦୂର କରିବାକୁ ଅନେକ କଥା କଅଁଳେଇ ସଅଁଳେଇ କହନ୍ତି, "ଦେଖ ଲକ୍ଷ୍ମୀ ! ତୁମ ପାଇଁ ଅସଲ ଅସଲ ପାଟ ପୀତାମ୍ବରୀ ଆଣିଛି । ଆଣିଛି ବଢିଆ ଅଳଙ୍କାର । ତୁମେ ଦୁଆର ଖୋଲି ଦିଅ ।"

ଲକ୍ଷ୍ମୀ କିନ୍ତୁ ସହଜରେ ଭୁଲିବା ପାତ୍ରୀ ନୁହନ୍ତି । କୁହନ୍ତି – "କିଛି ଶୁଣିବିନି । ଜବାବ ଦିଅ, ଆଉ ଥରେ ଏ ଭୁଲ କରିବନି, ଯିବନି । ତା'ହେଲେ ଯାଇ ଦ୍ୱାର ଖୋଲିବି ।"

ଜାଣନ୍ତି, ଲକ୍ଷ୍ମୀଙ୍କର ଏହି ଜିଦ୍ ପରେ ଜଗନ୍ନାଥ କି ଉତ୍ତର ଦିଅନ୍ତି ? ଜଗନ୍ନାଥଙ୍କ ପକ୍ଷରୁ ଥିବା ସେବକ ଜଣକ ଶେଷକୁ ରୋକ୍‌ଠୋକ୍ କହି ଦିଅନ୍ତି, –"ଶୁଣ ଲକ୍ଷ୍ମୀ, ଦୁଆର ନ ଖୋଲିବ ଯଦି ନ ଖୋଲ । ବର୍ତ୍ତମାନ ମୁଁ ମୋର ଜନ୍ମ–ପୀଠକୁ ପୁଣି ଫେରିଯାଉଛି । ମୋର ଶ୍ରୀମନ୍ଦିର କିମ୍ବା ତୁମଠାରେ କିଛି ଲୋଡ଼ା ନାହିଁ । କିନ୍ତୁ ମୁଁ ମୋର ପତିତପାବନ ଧର୍ମ ଛାଡି ପାରିବି ନାହିଁ । ତୁମେ ଜାଣ, ବର୍ଷକୁ ଥରେ ଏହି ଗୁଣ୍ଡିଚା ଯାତ୍ରା ଅବସରରେ ମୁଁ ମୋର ଅଗଣିତ ଭକ୍ତଙ୍କୁ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଦେଖିବାକୁ ଯାଏ । ସେମାନଙ୍କ ହାରି–ଗୁହାରି ଶୁଣେ । ସେମାନଙ୍କ ସଙ୍ଗେ ଏକାକାର ହୋଇଯାଏ । ତୁମେ ମଧ୍ୟ ମୋର ଏହି ଧର୍ମ ପାଳନ କରିଆସୁଛ । ତୁମେ ଦିନେ ଶ୍ରୀୟା ଚଣ୍ଡାଳୁଣୀ ଘରକୁ ଯାଇ ଏହି ଆଦର୍ଶ ଦେଖାଇଥିଲ, ମନେ ନାହିଁ ?"

ଲକ୍ଷ୍ମୀଙ୍କର ସବୁକଥା ମନେ ପଡିଯାଏ । ଅଭିମାନ ଭାଙ୍ଗିଯାଏ । ସେ ସଙ୍ଗେ ସଙ୍ଗେ ଦ୍ୱାର ଖୋଲି ଦିଅନ୍ତି । ପରେ ଜଗନ୍ନାଥ ଭିତରେ ପ୍ରବେଶ କରନ୍ତି । ଏବଂ ରତ୍ନ ସିଂହାସନକୁ ଯିବା ପୂର୍ବରୁ ରୁକ୍ମିଣୀ ବିବାହ ସମୟରେ ପଡିଥିବା ଗଇଁଠାଳ ଫିଟି ବନ୍ଦାପନା ହୁଏ । ଏତିକିବେଳେ ବର୍ଷକୁ ଥରେ ମାତ୍ର ଭକ୍ତମାନେ ବାହାର ତିଆରି ରସଗୋଲା ମହାପ୍ରଭୁଙ୍କୁ ଭୋଗ ଲଗାଇଥାଆନ୍ତି ।

ଗୁଣ୍ଡିଚା ଯାତ୍ରାରେ ଏହି ଶେଷ ପର୍ବରୁ ଜଣାପଡେ ଜଗନ୍ନାଥ ଧର୍ମ କିଭଳି ସାର୍ବଜନୀନ, ଲୌକିକ ଓ ସମାନତାର ପ୍ରତୀକ ।

ବର୍ତ୍ତମାନ ବିଚାର କରାଯାଉ, ଜଗନ୍ନାଥ କିପରି ସର୍ବ ଧର୍ମର ସମନ୍ୱୟ ।

## ସବୁଧର୍ମର ପ୍ରତୀକ : ଜଗନ୍ନାଥ

ଜଗନ୍ନାଥ ହିନ୍ଦୁ ବା ସନାତନ ଧର୍ମର ଦେବତା। ଏହି ଧର୍ମ ଭିତରେ ଥିବା ବିଭିନ୍ନ ସମ୍ପ୍ରଦାୟ ବା ଶାଖା ପ୍ରଶାଖା ଭିତରେ ସେ ଗୃହୀତ ହୋଇ ଯାଇଛନ୍ତି।

ସନାତନ ଧର୍ମ ପୃଥିବୀରେ ସବୁଠାରୁ ପୁରୁଣା । ମୁସଲମାନ, ଖ୍ରୀଷ୍ଟ, ବୌଦ୍ଧ, ଜୈନ କିମ୍ବା ଶିଖ ଧର୍ମ ଭଳି ଏହାର କେହି ନିର୍ଦ୍ଦିଷ୍ଟ ପ୍ରବର୍ତ୍ତକ ନାହାନ୍ତି। ଅବଶ୍ୟ ଅନେକଙ୍କ ମତରେ ବୌଦ୍ଧ, ଜୈନ ବା ଶିଖ୍ ଧର୍ମ ସନାତନ ଧର୍ମ-ଧାରାରୁ ପୃଥକ୍ ନୁହେଁ। ସେମିତି ବିଚାର କଲେ, କୌଣସି ଧର୍ମ ମଧ୍ୟ ଅନ୍ୟ ଧର୍ମରୁ ଅଲଗା ନୁହେଁ। କାରଣ ସବୁ ଧର୍ମର ଲକ୍ଷ୍ୟ ମନୁଷ୍ୟର ଚରିତ୍ର, ଆଚରଣ ଏବଂ ନୈତିକତାର ବିକାଶ। ଧର୍ମ ଅର୍ଥ ହେଲା ଯାହା ଆମକୁ ଧରି ରଖିଛି, ତଳେ ପକାଇ ଦେବନି। ଧର୍ମ ଛଡ଼ା ହୋଇଗଲେ ଆମେ ତଳେ ପଡ଼ିଯିବା। ହାହାକାର କରିବା। ଅବଶ୍ୟ ଏହି ଅର୍ଥରେ ଧର୍ମ କୌଣସି ନିର୍ଦ୍ଦିଷ୍ଟ ଧର୍ମ, ହିନ୍ଦୁ, ମୁସଲମାନ ବା ଖ୍ରୀଷ୍ଟ ଧର୍ମ ନୁହେଁ।

ଏହି ଦୃଷ୍ଟିରୁ ଜଗନ୍ନାଥ ଧର୍ମ ବିଶେଷ କରି ହିନ୍ଦୁମାନଙ୍କ ବିଚାରରେ କ'ଣ ? ହିନ୍ଦୁମାନଙ୍କ ଭିତରେ ଅନେକ ସୂର୍ଯ୍ୟ ଉପାସକ ଅଛନ୍ତି । ସେମାନଙ୍କୁ ସୌର କୁହାଯାଏ । ସୂର୍ଯ୍ୟ ମଧ୍ୟ ଧର୍ମ ଦେବତା ଭାବରେ ଆମ ପୁରାଣ ଏବଂ ପରମ୍ପରାରେ ଜଣାଶୁଣା । ଜଗନ୍ନାଥଙ୍କ ମହାନ ସାମ୍ୟ ଓ ମୈତ୍ରୀ ଯାତ୍ରା

ଗୁଣ୍ଡିଚାରେ ରଥ ଉପରେ ସେ ବାମନ ରୂପରେ ବିଜେ କରନ୍ତି । ଏହି ବାମନ ଅର୍ଥ ସୂର୍ଯ୍ୟ ।

କେତେକ ଅଛନ୍ତି ଗଣେଶଙ୍କୁ ମାନନ୍ତି । ଗଣେଶ ତ ସହଜେ ଗଣ ଦେବତା । ଅର୍ଥାତ ସମସ୍ତଙ୍କର ଦେବତା । ତେଣୁ ଜଗନ୍ନାଥ ଗଣେଶ ନ ହେବେ ବା କିପରି ? ପ୍ରତ୍ୟେକ ବର୍ଷ ସ୍ନାନ ପୂର୍ଣ୍ଣିମା ଦିନ ମହାପ୍ରଭୁ ଗଣେଶ ବେଶ ହୋଇଥାନ୍ତି । ଜଗନ୍ନାଥଙ୍କର ଅନ୍ୟ ଏକ ସୁନ୍ଦର ବେଶ ମଧ୍ୟ ହେଉଛି ଗଜ ଉଦ୍ଧାରଣ ବେଶ । ଏହି ବେଶରେ ସେ କୁମ୍ଭୀରର ଆକ୍ରମଣରୁ ଗଜ ଅର୍ଥାତ୍ ହାତୀକୁ ଉଦ୍ଧାର କରିଥିଲେବୋଲି ଏହି ବେଶର ନାମ ଏହିପରି । କବି ସେଥିପାଇଁ ଗାଉଛନ୍ତି :- *'ଚକ୍ର ପେଷି ନକ୍ର ନାଶି ଉଦ୍ଧରିଲ ଆପଣ ।'* ଏଥିରୁ ଜଣାଯାଏ ଜଗନ୍ନାଥ କେବଳ ମଣିଷ ସମାଜର ତ୍ରାଣକର୍ତ୍ତା ନୁହଁନ୍ତି । ସକଳ ଜୀବଜନ୍ତୁଙ୍କର ବି ରକ୍ଷାକର୍ତ୍ତା । ସଂସାରର ସର୍ଜନା ଓ ସୁରକ୍ଷା ପାଇଁ ଭଗବାନଙ୍କର ତାହାହିଁ କର୍ତ୍ତବ୍ୟ । ସ୍ଥାବର, ଜଙ୍ଗମ, କୀଟ, ପତଙ୍ଗାଦି ସକଳଙ୍କର ସେ ହେଉଛନ୍ତି ଜନ୍ମଦାତା, ପାଳନ କର୍ତ୍ତା ଏବଂ ସଂହାର କର୍ତ୍ତା । ଏହି ଜନମ, ପାଳନ ଓ ମରଣ ପାଇଁ ଭଗବାନଙ୍କର ତିନୋଟି ରୂପ ରହିଛି ବୋଲି କୁହାଯାଏ । ଯଥା– ବ୍ରହ୍ମା, ବିଷ୍ଣୁ, ମହେଶ୍ୱର । ବଡ ଦେଉଳରେ ଏହି ତିନିଗୋଟି ଠାକୁରାଣୀ ଆଉ ଠାକୁର ହେଲେ ଯଥାକ୍ରମେ ସୁଭଦ୍ରା, ଜଗନ୍ନାଥ ଆଉ ବଳଭଦ୍ର ।



ସୁଭଦ୍ରା ଲୋକାଚାରରେ ଜଗନ୍ନାଥ ଆଉ ବଳଭଦ୍ରଙ୍କର ଭଉଣୀ । ପୁରାଣରେ କୃଷ୍ଣ ବଳରାମଙ୍କର ଭଉଣୀ ମଧ୍ୟ ସୁଭଦ୍ରା । କେତେକ ଜଗନ୍ନାଥ-ତତ୍ତ୍ୱ ଦୃଷ୍ଟିରୁ ତାଙ୍କୁ ଆଦିଶକ୍ତି ବୋଲି କୁହାଯାଏ । ତାଙ୍କରି ସାହାଯ୍ୟରେ ଏ ଠାକୁରମାନେ ସବୁ କରି ପାରନ୍ତି । ଅସମ୍ଭବକୁ ସମ୍ଭବ, ଆଉ ସମ୍ଭବକୁ ବି ଅସମ୍ଭବ । କେହି ଜଗନ୍ନାଥଙ୍କୁ ମଧ୍ୟ ବିଶେଷ କରି ତାନ୍ତ୍ରିକମାନେ ଭଦ୍ରକାଳୀ ବା ଦକ୍ଷିଣକାଳିକା ଭାବରେ ଆରାଧନା କରନ୍ତି । ଜଗନ୍ନାଥ ମଧ୍ୟ ନାରୀଙ୍କ ଭଳି ନାକର ବସଣି ପରି ଫୁଲ ପିନ୍ଧନ୍ତି । ଶିବଙ୍କୁ ପୂଜା କରୁଥିବା ଶୈବମାନେ ତ ସହଜେ ବଳଭଦ୍ରଙ୍କୁ ସାକ୍ଷାତ ଶଙ୍କରଙ୍କ ସ୍ୱରୂପ ବୋଲି ଧରି ନିଅନ୍ତି ।

ବୈଷ୍ଣବମାନଙ୍କ ପାଇଁ ଜଗନ୍ନାଥ ତାହା ପୁଣି ସବୁ ପ୍ରକାରର ବିଷ୍ଣୁ ଭକ୍ତମାନଙ୍କ ପାଇଁ ।

ଶ୍ରୀକ୍ଷେତ୍ରକୁ ଆଦି ଶଙ୍କରାଚାର୍ଯ୍ୟଙ୍କ ସମେତ ରାମାନୁଜ, ରାମାନନ୍ଦ, ବଲ୍ଲଭାଚାର୍ଯ୍ୟ, ନିମ୍ବାର୍କ, ଚୈତନ୍ୟ, ନାନକ, ଶଙ୍କର ଦେବ ପ୍ରଭୃତି ବିଭିନ୍ନ ମତବାଦର ମହାତ୍ମାମାନେ ଆସିଛନ୍ତି । ସେମାନଙ୍କ ମତ ଭିତରେ କିଛି ନା କିଛି ପାର୍ଥକ୍ୟ ଅଛି । କିନ୍ତୁ ସେ ସମସ୍ତେ ଜଗନ୍ନାଥଙ୍କୁ ମାନି ନେଉଛନ୍ତି ।

ଏକଥା ଜଣା ଶୁଣାଯେ, ଅନେକ ଈଶ୍ୱର ବିଶ୍ୱାସୀ ଭଗବାନଙ୍କର କୌଣସି ନିର୍ଦ୍ଦିଷ୍ଟ ରୂପ, ଲିଙ୍ଗ ବା ଶରୀର ଥିବା ମାନନ୍ତି ନାହିଁ । ସେମାନଙ୍କୁ ନିରାକାରବାଦୀ କୁହାଯାଏ । ଅଥଚ ସେମାନେ ମଧ୍ୟ ଜଗନ୍ନାଥଙ୍କୁ ନିରାକାର ଭାବରେ ଗ୍ରହଣ କରନ୍ତି । କାରଣ ଜଗନ୍ନାଥଙ୍କର ଯେଉଁ ଆକାର ଅଛି, ତାହା ସଚରାଚର କୌଣସି ଆକାର ସଙ୍ଗେ ସମାନ ନୁହେଁ । ତେଣୁ ସେ ନିରାକାର ।

ମହାଭାରତ ଯୁଦ୍ଧ ପୂର୍ବରୁ ଅର୍ଜୁନଙ୍କର ମୋହ ଭାଙ୍ଗିବାକୁ ଶ୍ରୀକୃଷ୍ଣ ତାଙ୍କୁ ବିଶ୍ୱରୂପ ଦେଖାଇଥିଲେ । ସେହି ବିଶ୍ୱରୂପ ବର୍ଣ୍ଣନାରେ ଭଗବାନଙ୍କର ଅସରନ୍ତି ବାହୁ ଏବଂ ଚନ୍ଦ୍ର ସୂର୍ଯ୍ୟ ଭଳି ଆଖି ଥିବା କଥା କୁହାଯାଇଛି । ଜଗନ୍ନାଥଙ୍କର ରୂପ ମଧ୍ୟ ସେହିଭଳି ହୋଇଅଛି ।

ଆଉ କେତେକ କହନ୍ତି ସେ କ୍ଷୟ ବା କ୍ଷର । ଆଉ ତା ସଙ୍ଗେ ସଙ୍ଗେ ଅକ୍ଷୟ ବା ଅକ୍ଷର ମଧ୍ୟ । କ୍ଷର ଆକାରରେ ତାଙ୍କର ଦାରୁ ଶରୀର ବଦଳିଯାଏ । କିନ୍ତୁ ଅକ୍ଷର ଭାବରେ ତାଙ୍କ ବିଗ୍ରହ ଭିତରେ ଥିବା ବ୍ରହ୍ମ ବଦଳେ ନାହିଁ । ତେଣୁ ସେ ଦାରୁ ବ୍ରହ୍ମ ।

ଜୈନ ଧର୍ମର ଜିନ ନାଥଙ୍କ ନାମ ଅନୁସାରେ ଜଗନ୍ନାଥଙ୍କର ନାମକରଣ ହୋଇଛି । ତେଣୁ ତାଙ୍କୁ ଜୈନ ଦେବତା ବୋଲି ମଧ୍ୟ କୁହାଯାଏ । ଏହି ଧର୍ମର ସାଧକ 'କେବଳା' ଶବ୍ଦରୁ 'କୈବଲ୍ୟ' ଶବ୍ଦ ଆସିଛି । ଏହି ଧର୍ମର ୨୨ଜଣ ତୀର୍ଥଙ୍କରଙ୍କ ଯୋଗୁଁ ଜଗନ୍ନାଥ ମନ୍ଦିରରେ ବାଇଶି ପାହାଚ ଅଛି । ପ୍ରଥମ ତୀର୍ଥଙ୍କର ବୃଷଭନାଥଙ୍କର ଜନ୍ମ ଦିବସ ଆଷାଢ଼ ଦ୍ୱିତୀୟାରେ ଜଗନ୍ନାଥଙ୍କ ରଥଯାତ୍ରା ହେଉଛି । ସେହିପରି ଜଗନ୍ନାଥଙ୍କୁ ବୁଦ୍ଧ ବୋଲି ବି କୁହାଯାଏ । କାରଣ ବୌଦ୍ଧ ଧର୍ମର ତ୍ରିରତ୍ନ ଅର୍ଥାତ୍ ବୁଦ୍ଧ, ଧର୍ମ ଏବଂ ସଂଘ ହେଉଛନ୍ତି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା । ଭଗବାନଙ୍କର ଦଶ ଅବତାର ମଧ୍ୟରେ ବୁଦ୍ଧ ଏକ ଅବତାର ।

ହିନ୍ଦୁମାନଙ୍କ ଭିତରୁ କେତେକ ନିରାକାରବାଦୀ । ଶିଖ ଧର୍ମୀ ନିରାକାର ପୂଜକମାନଙ୍କର ଜଗନ୍ନାଥ ମଧ୍ୟ ଆରାଧ୍ୟ । ଭିନ୍ନ ଭିନ୍ନ ମତବାଦୀ ମଠ, ଜଗନ୍ନାଥଙ୍କ ମନ୍ଦିରର ନୀତି ସହିତ ଜଡିତ । ମଙ୍ଗୁ ମଠ ଓ ବାଉଳି ମଠ ନାମରେ ଶିଖ୍ ସଂପ୍ରଦାୟର ଦୁଇଟି ମଠ ଶ୍ରୀକ୍ଷେତ୍ରରେ ରହିଅଛି । ସନାତନ ଧର୍ମର ବିଭିନ୍ନ ମତ ବା ଶାଖା ପ୍ରଶାଖାକୁ ନେଇ ପୁରୀରେ ଆଗେ ୭୫୨ ଗୋଟି ମଠ ଥିଲା ବୋଲି କୁହାଯାଏ ।

ଖ୍ରୀଷ୍ଟ ଓ ମୁସଲମାନ ଧର୍ମର ସଙ୍କେତ ମଧ୍ୟ ଜଗନ୍ନାଥ ଧର୍ମରେ ଲକ୍ଷ୍ୟ କରାଯାଇଥାଏ । ଖୀରସ୍ଥାନମାନଙ୍କର କ୍ରୁଶଚିହ୍ନ ଯାହା, ଜଗନ୍ନାଥଙ୍କର ପଛ ଚିହ୍ନ ସେଇଆ । ଏମ୍. ସିଲଭସିନ୍ ଲେଭିଅ ଯୀଶୁଖ୍ରୀଷ୍ଟଙ୍କ ସମ୍ବନ୍ଧରେ ଏକ ବିଖ୍ୟାତ ପୁସ୍ତକ ଲେଖିଛନ୍ତି । ସେଥିରେ ଅଛି– ଯୀଶୁ ଜଗନ୍ନାଥଙ୍କ ପାଖରେ ଚାରିବର୍ଷ

ରହିଥିଲେ । ସେ ଏଠାରେ ପ୍ରଥମେ ସମାଜର ପତିତ ଲୋକଙ୍କ ପ୍ରତି ପ୍ରୀତି ଏବଂ ମୈତ୍ରୀର ଶିକ୍ଷା ଦେଇଥିଲେ । ଠିକ୍ ସେହିପରି ମୁସଲମାନ ଧର୍ମ କଥା । ଏମାନଙ୍କର ଅର୍ଦ୍ଧ ଚନ୍ଦ୍ର ଓ ତାରକାର ଚିହ୍ନ ସହିତ ନବ କଳେବରରେ ବିଗ୍ରହମାନଙ୍କ ଶରୀରକୁ ହିନ୍ଦୁ ପରଂପରା ଅନୁସାରେ ଦାହ ନ କରି, ଇସ୍‌ଲାମ ପରଂପରା ଅନୁସାରେ କବର ଦେବା ଏଠାରେ ଅନୁସରଣ କରାଯାଏ । ଏହାଛଡା ଜଗନ୍ନାଥଙ୍କ ପ୍ରତି ବିଖ୍ୟାତ ଯବନ ଭକ୍ତ କବୀର, ହରିଦାସ ଓ ସାଲବେଗଙ୍କ ଭକ୍ତି କଥା ତ ବେଶ୍ ଜଣାଶୁଣା ।

## ମହାପ୍ରସାଦର ମହତ୍ତ୍ୱ

ଜଗନ୍ନାଥ ଧର୍ମ, ସଂସ୍କୃତି ଓ ଚଳଣିରେ ଆଉ ଗୋଟିଏ ବିଶେଷତ୍ୱ ଅଛି । ତାହା ହେଉଛି ଜଗନ୍ନାଥଙ୍କ ମହାପ୍ରସାଦ । ତାଙ୍କ ପ୍ରସାଦର ନାମ ଖାଲି ମହାପ୍ରସାଦ ନୁହେଁ । ତାଙ୍କ ଦେଉଳର, ତାଙ୍କ ଦାଣ୍ଡର ନାମ ମଧ୍ୟ ସେହିପରି ବଡଦେଉଳ, ବଡ ଦାଣ୍ଡ ଇତ୍ୟାଦି ।

ଏହି ମହାପ୍ରସାଦର ମହତ୍ତ୍ୱ ହେଲା, ଏହାକୁ ସେବନ କଲାବେଳେ କୌଣସି ଜାତି, ଧର୍ମ ବା ବର୍ଣ୍ଣର ବିଚାର ରହିବ ନାହିଁ । ଏହା ବନ୍ଧା ହେଉ ନଥିବାରୁ ଏହାର ନାମ ଅବଢ଼ା । ଅମୂଲ୍ୟ ଭକ୍ତିରେ ଏହା ସେବନ କରିବା ପାଇଁ ଯେଉଁମାନେ ମାଗନ୍ତି, ସେମାନଙ୍କୁ ବିନା ମୂଲ୍ୟରେ ଏହା ଦିଆଯାଇଥାଏ । ଏହାର ସେବନ, ପ୍ରାପ୍ତି ଏବଂ ପ୍ରାପ୍ତି ପରେ ମୁଣ୍ଡରେ ହାତ ବୋଲି ଦେବା ଇତ୍ୟାଦିରୁ ନିଜ ନିଜ ଭିତରେ ମନର ମେଳ ବା ପ୍ରୀତି ଓ ସଦ୍‌ଭାବର ଆରମ୍ଭ ହୁଏ । ଅନ୍ନ ପ୍ରସାଦରୁ କଣିକାଏ ବା ଗୋଟିଏ ଶୁଖିଲା ଅନ୍ନ ନିର୍ମାଲ୍ୟ ଭାବରେ ସେବା

କରାଯାଏ । ଦୂର ଦୂରାନ୍ତରର ଲୋକେ ଏହି ନିର୍ମାଲ୍ୟ ସେବା କରି ଜଗନ୍ନାଥଙ୍କୁ ଅନୁଭବ କରନ୍ତି । ଏହା ମହା ନର୍ମଳତାର ସୂଚନା ଦିଏ ।

ମହାଲକ୍ଷ୍ମୀଙ୍କର ରାନ୍ଧଣା ହେଉଛି ଏହି ମହାପ୍ରସାଦ । ବିଷ୍ଣୁଙ୍କର ଦିବ୍ୟ ଭୋଜନ ପରେ ସେଥିରୁ କାଣିଚାଏ ଅଇଁଠା ରହିଯାଇଥିଲା । ତାହା ନାରଦ ପାଇଥିଲେ । ମହାଦେବଙ୍କୁ ସେ କଣିକାଏ ପ୍ରସାଦ ଦେଲେ । ପାର୍ବତୀଙ୍କ ପାଇଁ କିଛି ନ ଥିବାରୁ ସେ ଭାରି ମନ କଷ୍ଟ କରିଥିଲେ । ସେଥିପାଇଁ ତାଙ୍କୁ ବିଷ୍ଣୁ ବର ପ୍ରଦାନ କଲେ । କଳି ଯୁଗରେ ଶ୍ରୀକ୍ଷେତ୍ରରେ ସେ ବିମଳା ହୋଇ ରହିବେ । ତାଙ୍କୁ ଜଗନ୍ନାଥଙ୍କ ପ୍ରସାଦ ସମର୍ପିତ ହେଲା ପରେ ତାହାକୁ ମହାପ୍ରସାଦ କୁହାଯିବ । ବିଭିନ୍ନ ଧୂପରେ ଜଗନ୍ନାଥଙ୍କୁ ପ୍ରସାଦ ଭୋଗ ହେଲାପରେ ସେଠାରୁ ଆସି ପ୍ରଥମେ ବିମଳାଙ୍କୁ ଅର୍ପଣ କରାଯାଏ । ଶ୍ରୀମନ୍ଦିରରେ ଥିବା ଅନ୍ୟାନ୍ୟ ପାର୍ଶ୍ୱଦେବ ଦେବୀଙ୍କ ପାଖରେ ସ୍ୱତନ୍ତ୍ର ଭୋଗର ବ୍ୟବସ୍ଥା ଅଛି । କିନ୍ତୁ ବିମଳାଙ୍କ ମନ୍ଦିରରେ ସେହି କାରଣରୁ ଅଲଗା ଭୋଗ ନାହିଁ । ଅଥଚ ମହାଲକ୍ଷ୍ମୀଙ୍କ ପାଇଁ ଅଲଗା ଭୋଗଘର ଏବଂ ସେଥିରେ ତାଙ୍କ ପାଇଁ ପ୍ରସ୍ତୁତ ହେଉଥିବା ବଭିନ୍ନ ଭୋଗ ଭିତରେ ଅନ୍ନ ଭୋଗର ଆଦୌ ବ୍ୟବସ୍ଥା ନାହିଁ ।

ମହାଲକ୍ଷ୍ମୀଙ୍କ ଦ୍ୱାରା ପ୍ରସ୍ତୁତ ହେଉଥିବା ଜଗନ୍ନାଥଙ୍କର ଏହି ଦୈନିକ ଭୋଗର ନାମ ଛପନ ଭୋଗ । ଅର୍ଥାତ୍ ପ୍ରତ୍ୟେକ ଦିନ ତାଙ୍କୁ ଛପନ ପ୍ରକାର ଖାଦ୍ୟ ସାମଗ୍ରୀ ଦିଆଯାଏ । ଏହି ଖାଦ୍ୟ ଭିତରେ ଅତି ସୁଆଦିଆ ରସାବଳୀ, ରାବିଡି, କାନିକା, ଅନେକ ରକମର ପିଠା ଓ ଦହିବରାଠାରୁ ଆରମ୍ଭ କରି ବଗଡା ଅନ୍ନ ଓ ବିରିଡାଲି ପର୍ଯ୍ୟନ୍ତ ରହିଥାଏ । ଏହାର ହୁଏତ ଅନ୍ୟ ଅର୍ଥ ହୋଇପାରେ ।

ଜଗନ୍ନାଥ ଅମୀରଠାରୁ ଫକୀର ପର୍ଯ୍ୟନ୍ତ ସମସ୍ତଙ୍କର ପ୍ରତିନିଧି। ରାଜା ମହାରାଜାଙ୍କଠାରୁ ଦରିଦ୍ର ପ୍ରଜାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ଖାଦ୍ୟ ତାଙ୍କ ପାଟିକୁ ସୁଆଦ । ଏହି ଭୋଗର ପରିମାଣ ମଧ୍ୟ କିଛି କମ୍ ନୁହେଁ, ଷାଠିଏ ପଉଟି।

ଏହି ମହାପ୍ରସାଦର ମହତ୍ତ୍ୱ ଅନ୍ୟ ଏକ ଦୃଷ୍ଟିରୁ ମଧ୍ୟ ଜଣା ଯାଇଥାଏ। ତାହା ହେଉଛି ସଂହତି । କୁହାଯାଏ ଭାରତର ଏହି ସଂହିତ ବା ଏକତା ଦୃଷ୍ଟିରୁ ଏହାର ଚାରିଦିଗରେ ଶଙ୍କରାଚାର୍ଯ୍ୟ ଚାରିଗୋଟି ପୀଠ ସ୍ଥାପନ କରିଥିଲେ । ଉତ୍ତରରେ ବଦ୍ରୀନାଥ, ପଶ୍ଚିମରେ ଦ୍ୱାରକାନାଥ, ପୂର୍ବରେ ଜଗନ୍ନାଥ ଓ ଦକ୍ଷିଣରେ ରାମେଶ୍ୱର ନାଥ। ଭଗବାନ ବିଷ୍ଣୁ ଦୈନିକ ସାରା ଭାରତ ପରିଭ୍ରମଣ କରନ୍ତି ବୋଲି କୁହାଯାଏ। ଅର୍ଥାତ୍ ସେ ହିମାଳୟର ଉଷ୍ଣ ପ୍ରସ୍ରବଣରେ ବଦରିକା ଧାମରେ ସ୍ନାନ, ଦ୍ୱାରକାରେ ଶ୍ରୀକୃଷ୍ଣଙ୍କର ପ୍ରସାଧନ ଓ ପୁରୀରେ ଭୋଜନ ପରେ ଦକ୍ଷିଣ ହାଉଆ ଖାଇ ରାମେଶ୍ୱରରେ ଶୟନ କରିବାକୁ ଯାଆନ୍ତି । ତେଣୁ ଭୋଜନ ପାଇଁ ଶ୍ରୀକ୍ଷେତ୍ର ବିଖ୍ୟାତ। ଏକ ସମୟରେ ଲକ୍ଷ ଲକ୍ଷ ଲୋକଙ୍କର ଏଠାରେ ସମାଗମ ହେଲେବି, ସମସ୍ତଙ୍କ ପାଇଁ ଅନାୟସରେ ଭୋଜନର ବ୍ୟବସ୍ଥା କରି ହୁଏ । ସେଥିପାଇଁ ସାରା ପୃଥିବୀରେ ଏହା ସବୁଠାରୁ ବଡ ଭୋଜନାଳୟ ବୋଲି କେହି କେହି କହିଥାଆନ୍ତି । ଜଗନ୍ନାଥଙ୍କ ମହାପ୍ରସାଦ କାହାକୁ ଯାଚିଲେ କେହି ମନା କରିବେ ନାହିଁ। ଜଣଙ୍କର ଆଉ ଜଣଙ୍କ ସହିତ ଯେତେ ବିବାଦ ଥାଉ, ଯେତେ ଶତ୍ରୁତା ଥାଉ, ଯଦି ସେ ତାଙ୍କୁ ମହାପ୍ରସାଦ ଅର୍ପଣ କରିବେ କିମ୍ବା ସେବନ ପାଇଁ ନିମନ୍ତ୍ରଣ କରିବେ, ତାହା ବାରଣ କରାଯାଇ ନ ପାରିବା ହେଉଛି ଜଗନ୍ନାଥ ସଂସ୍କୃତି ବା ଧର୍ମର ପରମ୍ପରା। ଏହାର ଅର୍ଥ ହେଉଛି, ପରସ୍ପର ଭିତରେ ବନ୍ଧୁତା। ଯାହାକି ଏହାର ମୂଳାଧାର ।

## ଏକତା ଓ ସମତାର ଦେବତା

ପ୍ରକୃତରେ ଜଗନ୍ନାଥ ହେଉଛନ୍ତି ମୈତ୍ରୀ ଦେବତା । ଏହାଙ୍କୁ ଦର୍ଶନ କରିବା ବା ଏହାଙ୍କ ପାଖରେ ଭକ୍ତି ନିବେଦନ କରିବାରେ ସ୍ୱତନ୍ତ୍ରତା ରହିଛି । ଏହାର ଢଙ୍ଗ ଅନ୍ୟ ଦେବଦେବୀଙ୍କ ପାଖରେ ଭକ୍ତି ଅର୍ପଣଠାରୁ ପୃଥକ୍ ।



ଜଗନ୍ନାଥଙ୍କୁ ଦର୍ଶନ କରିବାର ସାଧାରଣ ନିୟମ ବା ପ୍ରଥମ ଆଚରଣ ହେଲା, ଗରୁଡ ଖମ୍ଭକୁ କୁଣ୍ଢାଇ ପକାଇବା। ଗରୁଡ ଭଗବାନ ବିଷ୍ଣୁଙ୍କର କେବଳ ପରମ ଭକ୍ତ ନୁହନ୍ତି, ବାହନ ମଧ୍ୟ। ବିପଦରେ ପଡି କୌଣସି ବ୍ୟକ୍ତି ବା ଜୀବ ରୋଦନ କଲେ ଭଗବାନ ତାର ଦୁଃଖ ଦୂର କରିବାକୁ ଏହି ଗରୁଡ ଉପରେ ବସି ଉଡିଆସନ୍ତି। ତେଣୁ ଏହି ଗରୁଡ ଖମ୍ଭକୁ କୁଣ୍ଢାଇବାମାନେ ଜଗନ୍ନାଥଙ୍କୁ କୁଣ୍ଢାଇବା। ଭକ୍ତ ଜଗନ୍ନାଥଙ୍କୁ ଯେପରି କୁଣ୍ଢାଇଥାନ୍ତି, ଜଗନ୍ନାଥ ମଧ୍ୟ ତାଙ୍କୁ ସେପରି କୁଣ୍ଢାଇଥାଆନ୍ତି। କାରଣ ସେହିପରି କୁଣ୍ଢାଇବାକୁ ଜଗନ୍ନାଥଙ୍କର ଏବଂ ବଳଭଦ୍ରଙ୍କର ଦୁଇ ହାତ ସବୁବେଳେ ଖୋଲା ହୋଇ ରହିଥାଏ। ଏଥିରୁ ଜଣାପଡେ, ଜଗନ୍ନାଥ ସଂସ୍କୃତି ମୈତ୍ରୀ ଧର୍ମୀ ଏବଂ ଜଗନ୍ନାଥ ମୈତ୍ରୀର ଦେବତା।

ଏହାଛଡା ଜଗନ୍ନାଥ ଦର୍ଶନ ବେଳେ ଭକ୍ତର ଆଉ ଏକ ସ୍ୱାଭାବିକ ଲକ୍ଷଣ ହେଲା, ହାତ ଦୁଇଟିକୁ ଉପରକୁ ଟେକିଦେବା। ଏଥିରୁ ସୂଚିତ ହୁଏ ପରମ ଶରଣାଗତ ଭାବ। ଅର୍ଥାତ୍ "ସମସ୍ତଙ୍କୁ ଛାଡି, ସବୁ କିଛି ଛାଡି, ପ୍ରଭୁ! ତୁମ ପାଖରେ ଶରଣ ପଶୁଛି।" ଭାଗବତରେ ଅଛି :–

*'ସକଳ ତୀର୍ଥ ତୋ ଚରଣେ*
*ବଦ୍ରିକା ଯିବି କି କାରଣେ।'*



ଜଗନ୍ନାଥଙ୍କ ସମ୍ବନ୍ଧରେ ବେଦ ପୁରାଣଠାରୁ ଆରମ୍ଭ କରି ବିଭିନ୍ନ ଶାସ୍ତ୍ର ଓ ପୋଥିମାନଙ୍କରେ ପଣ୍ଡିତମାନେ ରାଶି ରାଶି ଲେଖା ଲେଖିଥିଲେ ହେଁ, କେହି ତାଙ୍କର ରହସ୍ୟ ଭେଦ କରି ପାରିଥିବା ମନେ ହୁଏ ନାହିଁ। କାରଣ ସେ ହେଉଛନ୍ତି ସବୁଠାରୁ ରହସ୍ୟମୟ ଦେବତା। ରହସ୍ୟର ରହସ୍ୟ। କାରଣ ତାଙ୍କ ରହସ୍ୟ ଦେବତାମାନେ ତ ଜାଣି ପାରନ୍ତି ନାହିଁ, ମନୁଷ୍ୟ ବା କ'ଣ ଜାଣି ପାରିବ ?

ମହାନ ମାନବିକତାର ଦେବତା ଜଗନ୍ନାଥ। ସାଧାରଣ ମନୁଷ୍ୟ ଭଳି ଦୈନିକ ଦାନ୍ତ ଘଷିବା, ଗାଧୋଇବା, ସକାଳେ ଜଳଖିଆ ଖାଇ ସାରିଲା ପରେ

ବନ୍ଧୁ, ପରିଜନଙ୍କ ସହିତ ଆଳାପ ଆଲୋଚନା କରନ୍ତି । ବର୍ଷକୁ ଥରେ ନିଜର ପିତାମାତା ଅର୍ଥାତ୍ ଦଶରଥ; କୌଶଲ୍ୟା, ନନ୍ଦ ; ଯଶୋଦା, ବସୁଦେବ, ଦେବଗଣ ଏଭଳିକି ଅପୁତ୍ରିକ ଇନ୍ଦ୍ରଦ୍ୟୁମ୍ନ ମହାରାଜା ଏବଂ ଗୁଣ୍ଡିଚା ମହାରାଣୀଙ୍କୁ ଶ୍ରାଦ୍ଧ ଦେବା ଇତ୍ୟାଦି କାର୍ଯ୍ୟ କରିଥାଆନ୍ତି । ଶୀତ ଦିନରେ ଶୀତ ପ୍ରକୋପରୁ ରକ୍ଷା ପାଇବା ପାଇଁ ଅର୍ଥାତ୍ ମାର୍ଗଶିର ଶୁକ୍ଳ ଷଷ୍ଠୀଠାରୁ ମାଘ ଶୁକ୍ଳ ବସନ୍ତ ପଞ୍ଚମୀ ପୂଜା ଯାଏ ଘୋଡ ଲାଗି ହୁଅନ୍ତି । ସେହି ଘୋଡରେ ସପ୍ତାହରେ ସାତ ଦିନ ପାଇଁ ଅଲଗା ଅଲଗା ବା ମିଶାମିଶି ରଙ୍ଗ ରହିଥାଏ ।

ଜଗନ୍ନାଥ ସବୁ ଜାତିର, ସବୁ ଧର୍ମର, ସବୁ ବର୍ଣ୍ଣର ଦେବତା । ସେ ଷୋଳ କଳା । ସେ ପୂର୍ଣ୍ଣତାର ପ୍ରତିମୂର୍ତ୍ତି । ଚରମ ଆଉ ପରମ ମୈତ୍ରୀ ତଥା ସଂହତିର ପ୍ରତୀକ ।

